



ଯେ ସ୍ୱ ମାଲ୍ୟଗିରିର ଶିଖର ଦେ
ସ୍ୱାଧୀ ପାଲ-ଲହଡ଼ା ରାଜ୍ୟବାସିମାନଙ୍କ
ବିଦ୍ରୋହରେ * ଯାହାଙ୍କର ଅଦୃଷ୍ଟପୂର୍ବ
ଏବଂ ଅସୀମ ସାହସିକତା ପ୍ରତ୍ୟକ୍ଷ କର
ପଦକରେ ଭୂଷିତ କରିଥିଲେ; ଯାହାଙ୍କ
ବିଦ୍ୟାନୁରାଗିତା, ସ୍ୱଦେଶ-ହିତୈଷିତା ଆଦି ସଦ୍‌ଗୁ
ଏକାନ୍ତ ଅନୁକରଣୀୟ ସେହି ବିବୁଧ ସଦ୍
ଭକ୍ତିଭାଜନ ସ୍ୱର୍ଗୀୟ ପାଲ-ଲହଡ଼ାଧିପତି ରାଜା
ପବିତ୍ର ନାମରେ ଏହି "ବୃତ୍ର-ବଧ" ନାଟକ
ନିଦର୍ଶନ ସ୍ୱରୂପ ଉତ୍ସୃଷ୍ଟ ହେଲା । ଇତି

ପାଲ-ଲହଡ଼ା ରାଜଧାନୀ
ତା ୮।୭।୧୯୦୯ ମସିହା

---

* ୧୮୬୭।୬୮ ମସିହାରେ ର
ର ରାଜ୍ୟର ଭୂୟାଁମାନଙ୍କ
ଥିଲା । ତହିଁରେ
ଯତ କରିବାକୁ ଅ

# ବୃତ୍ର-ବଧ ।

( ନାଟକ )

ପଣ୍ଡା ପ୍ରଣୀତ

ଏବଂ

ଯନ୍ତ୍ରାଧ୍ୟକ୍ଷ

ଗଣେଶ୍ୱର ପାଲ ଦ୍ୱାରା

[illegible]ରେ

ପ୍ରକାଶିତ ।

ପ୍ରଥମ ମୁଦ୍ରଣ ।



# BRUTRA-BUDHA



BY

JAGANNATH PANDA

FIRST EDITION

୧୮୦୮

CUTTACK,
Printed by the Cuttack Printing Company,
Limited.

*Price Eight Annas only.* ମୂଲ୍ୟ ଆଠଅଣା ମାତ୍ର ।

# ବିଶେଷ ଦ୍ର[illegible]

ଏ ପୁସ୍ତକର କେତେକ ସ୍ଥଳରେ [illegible] ଳାକୁ ଶେଷରେ ଶୁଦ୍ଧିପତ୍ର ପ୍ରଦତ୍ତ ହୋଇଅଛି । ପାଠକମାନଙ୍କୁ ଅନୁ[illegible] ଧ ପୂର୍ବରୁ ଶୁଦ୍ଧିପତ୍ରାନୁଯାୟୀ ସଂଶୋଧନ କରି ନେବେ ।



## ନାଟ୍ୟୋଲ୍ଲିଖିତ ବ୍ୟକ୍ତିଗଣ ।

### ପୁରୁଷଗଣ ।

| | | |
|---|---|---|
| ବୃତ୍ର | | ରାକ୍ଷସ ରାଜା । |
| ରୁଦ୍ରପୀଡ଼ | ... | ,, ,, ପୁତ୍ର । |
| ମନ୍ଦନାସୁର ଓ କାଳଭଦ୍ର | | ,, ସେନାପତି ଦ୍ୱୟ |
| ମନ୍ତ୍ରୀ | ... ... | ,, ସଚିବ । |
| ବୀରଭଦ୍ର | | ଶିବଦୂତ । |
| ଜୟନ୍ତ | | ଇନ୍ଦ୍ରପୁତ୍ର । |

ଏତଦ୍‌ବ୍ୟତୀତ ଇନ୍ଦ୍ର, ବରୁଣ, କୁବେର, ଅଗ୍ନି, ଯମ, ପବନ, କାର୍ତ୍ତିକେୟ, ବିଶ୍ୱକର୍ମା, ବିଦୂଷକ, ଦଧୀଚି, ସାରଥି, ଶିଷ୍ୟଗଣ, ସୈନିକବର୍ଗ, ସୂତ୍ରଧର, ନଟ, ଋଷିକୁମାର, ଜନୈକଋଷି, ଜନୈକଭୃତ୍ୟ ଓ ଦ୍ୱାରୀ ।

### ସ୍ତ୍ରୀଗଣ ।

| | | |
|---|---|---|
| ପାର୍ବତୀ | ... | ଶିବ-ପତ୍ନୀ । |
| ଶଚୀ | ... | ଇନ୍ଦ୍ର-ପତ୍ନୀ । |
| ଐନ୍ଦ୍ରିଲା | ... ... | ବୃତ୍ର-ପତ୍ନୀ । |
| ଇନ୍ଦୁବାଳା | | ରୁଦ୍ରପୀଡ଼-ପତ୍ନୀ । |
| ଚପଳା | ... ... ... | ଐନ୍ଦ୍ରିଲାର ସହଚରୀ । |

ଏତଦ୍‌ବ୍ୟତୀତ ନଟୀ, ନର୍ତ୍ତକୀ, ରଣଚଣ୍ଡୀ, ଦାସୀ, ଅଦୃଷ୍ଟକୁମାରୀଗଣ ଓ ଅପ୍ସରଗଣ ।

ବିଦ୍ୟୋତ୍ସାହୀ ପ୍ରବର, ସାହିତ୍ୟ ପ୍ରେମିକ ପାଲ-ଲହଡ଼ାଧିପତିଙ୍କ

## ମନ୍ତବ୍ୟ

ଶ୍ରୀଯୁକ୍ତ ଜଗନ୍ନାଥ ପଣ୍ଡାଙ୍କ କୃତ "ବୃତ୍ର-ବଧ" ନାଟକ ପୁସ୍ତକ ଖଣ୍ଡି ପାଠ କରି ଅତିଶୟ ତୃପ୍ତି ଲାଭ କଲି । ନାଟକରେ ବୀର ଓ କରୁଣ ରସାତ୍ମକ ବାକ୍ୟ ଛଟା ଯଥା-ସ୍ଥାନରେ ସନ୍ନିବେଶିତ ହୋଇଥିବାରୁ ସର୍ବାଙ୍ଗୀନ ସୁନ୍ଦର ହୋଇଅଛି । ତୁଳନାଦ୍ୱାରା ଉତ୍କଳ ଭାଷାରେ ଥିବା ଅନ୍ୟାନ୍ୟ ନାଟକ ଅପେକ୍ଷା କଦାଚ ହୀନ ହୋଇ ନ ପାରେ । ଏଠାରେ ଏହି ନାଟକ କେତେକ ଥର ଅଭିନୀତ ହୋଇଥିଲା । ନାଟକର ପ୍ରତ୍ୟେକ ଦୃଶ୍ୟ ସୁଖପ୍ରଦ । ଇନ୍ଦ୍ରଙ୍କର ଦଧୀଚି ଋଷିଙ୍କ ନିକଟରେ ଅସ୍ଥି ନିମନ୍ତେ ଦୈନ୍ୟ ପୁରଃସର ପ୍ରାର୍ଥନା, ଋଷିଙ୍କର ପରୋପକାରାର୍ଥେ ଦେହତ୍ୟାଗ, ବୃତ୍ର ଏବଂ ରୁଦ୍ରପୀଡ଼ର ଦେବତା-ମାନଙ୍କ ସହିତ ଯୁଦ୍ଧ ବିଶେଷ ଚିତ୍ତାକର୍ଷକ ହୋଇଅଛି ।

ପରିଶେଷରେ ବକ୍ତବ୍ୟ ଏହି ପୁସ୍ତକଟି ଯେ ସମ୍ପୂର୍ଣ୍ଣ ଦୋଷଶୂନ୍ୟ ଏହା ବୋଲାଯାଇ ନ ପାରେ । କିନ୍ତୁ ଦୋଷ ଅପେକ୍ଷା ଗୁଣର ଭାଗ ଅଧିକ ଅଛି । ସୁତରାଂ ନାଟକ ଖଣ୍ଡି ଯେ ଅଭିନୟର ଗୋଟିଏ ଅଭିନବ ଉତ୍ତମ ସାମଗ୍ରୀ ଏଥିରେ ମୋର ଅଣୁମାତ୍ର ସନ୍ଦେହ ନାହିଁ ।

୪.୦।୧୦।୧୯୦୯
ରାଜପ୍ରାସାଦ
ପାଲ-ଲହଡ଼ା

ଶ୍ରୀ ଦୁଃଖ-ଭଞ୍ଜ ଗଣେଶ୍ୱର ପାଲ
ରାଜା ଏବଂ ଫ୍ୟୁଡେଟରିଚିଫ୍

ସଂସ୍କୃତ ସାହିତ୍ୟ-ଉଦ୍ୟାନ-ବିହାର ରସିକ, "ଋତୁସଂହାର"ର ଉତ୍କଳାନୁବାଦକ "ଶୈବଳିନୀ" ପ୍ରଭୃତି ପୁସ୍ତକ ପ୍ରଣେତା ବାମଣ୍ଡା ରାଜଭ୍ରାତା ଶ୍ରୀଯୁକ୍ତ ବଳଭଦ୍ର ଦେବ ବର୍ମ୍ମକୁମର ମହୋଦୟ ଏ ପୁସ୍ତକର ପାଣ୍ଡୁ-ଲିପି ପାଠ କରି ସ୍ୱହସ୍ତରେ ଲେଖି-ଅଛନ୍ତି:—

ମହାଶୟ !

ମୁଁ ଆପଣଙ୍କ "ବୃତ୍ର-ବଧ" ନାଟକ ପାଠ କରି ପରମ ପ୍ରୀତ ହୋଇଅଛି ।

ବାସବ ବିଜୟୀ ବୃତ୍ରର ବୀରତ୍ୱ, ନିଷ୍ଠୁର ଈର୍ଷା ଦେବେନ୍ଦ୍ରାଣୀ ପ୍ରତି ଉଦ୍ଧତ ସ୍ୱଭାବା ଦୈତ୍ୟ ପତ୍ନୀ ଐନ୍ଦ୍ରିଲାର ଦୁର୍ବ୍ୟବହାର, ସରଳମୟୀ ଫୁଲ୍ଲ-ପଙ୍କଜ ସୌରଭ-ସ୍ନିଗ୍ଧ ପ୍ରେମବିହ୍ୱଳା ଇନ୍ଦୁବାଳାର ପତିଭକ୍ତି ଓ ବାସବାଦି ଦେବତାମାନଙ୍କ ଉପକାରାର୍ଥେ ମହର୍ଷି ଦଧୀଚିଙ୍କର ନିଃସ୍ୱାର୍ଥଭାବେ ବିବୁଧ ବାଞ୍ଛିତ ଶରୀରୋତ୍ସର୍ଗ ଇତ୍ୟାଦି ସୁ-କୌଶଳ ବାକ୍ୟବିନ୍ୟାସଦ୍ୱାରା ଆପଣ ବର୍ଣ୍ଣନା କରିଅଛନ୍ତି । ଭାଷା ସରଳ ଓ ସୁଖପାଠ୍ୟ ହୋଇଅଛି ।

ଆଶା କରେଁ ଉତ୍କଳସାହିତ୍ୟ-ଭଣ୍ଡାରରେ ଉତ୍କୃଷ୍ଟ ରତ୍ନସ୍ୱରୂପ ଏହି ଗ୍ରନ୍ଥଟି ଗୃହୀତ ହେବ । ଇତି ।

୧୬।୧୦।୦୯ } ଆପଣଙ୍କର<br>ଶ୍ରୀ ବଳଭଦ୍ର ଦେବ



# ବୃତ୍ର—ବଧ ।

## ପ୍ରସ୍ତାବନା ।



ନାନ୍ଦୀ—

ସ୍ୱପାଙ୍ଗସ୍ମାରହେତୁଷ୍ୱପି ବହୁଧମନୋରଞ୍ଜନେଷୂତ୍କଳେଽସ୍ମିନ୍
ସତ୍ସ୍ୱନେକେଷୁ ଦୃଶ୍ୟାତ୍ମକନବକୃତିଷୁ ପ୍ରେକ୍ଷକାଣାଂ ବୁଧାନାଂ ।
ଚିତ୍ରାମୋଦଂ ମଦୀୟଂ କିଲ ନବରଚିତଂ ନାଟକଂ; ସତ୍ୟପୀନ୍ଦୌ-
ଖଦ୍ୟୋତଃ କିଂ ବିତନ୍ୟାଂ ପ୍ରକୃତିପୁରୁଷଯୋର୍ନୈବ ପୁଷ୍ଟ୍ୟୈଭିଖ୍ୟାଂ ? ॥

ସୂତ୍ରଧର—( ସ୍ୱଗତଃ ) ଅହା ! ଅଜି ଏହି ରଜନୀଟି କି ସଚନ୍ଦ୍ରା-କି ସ୍ୱଚ୍ଛା-କି ମନମୁଗ୍ଧକାରିଣୀ ହୋଇଅଛି । କି ରାଜା, କି ପ୍ରଜା, କି ଧନୀ, କି ନିର୍ଦ୍ଧନ, କି ପଣ୍ଡିତ, କି ମୂର୍ଖ, କି ପାଷଣ୍ଡ ନାସ୍ତିକ, କି ସାଧୁ ଆସ୍ତିକ, ସମସ୍ତେ ଆନନ୍ଦୋଲ୍ଲାସରେ ମତ୍ତ ହୋଇଚନ୍ତି । ଏ ସମୟରେ ଗୋଟିଏ ନାଟକର ଅଭିନୟ ହେଲେ ବେଶ୍ ଭଲ ହୁଅନ୍ତା ।

( ନଟର ପ୍ରବେଶ )

ନଟ—ମହାମନ୍ ! ନିର୍ଜ୍ଜନରେ କଅଣ ଭାବୁଚନ୍ତି ?

ସୂତ୍ର—ଏହି କଥା ଭାବୁଥିଲି ଯେ ଆଜି ଯେପରି ବନ୍ଧୁଲୋକଙ୍କର ସମାଗମ ହୋଇଛି—ଯେପରି ଲୋକେ ଆନନ୍ଦୋଲ୍ଲାସରେ ମତ୍ତ ହୋଇଚନ୍ତି—ଏ ସମୟରେ ଗୋଟିଏ ନାଟକର ଅଭିନୟ କଲେ ଭଲ ହୁଅନ୍ତା ।

ନଟ—ଓଡ଼ିଆରେ ନାଟକାଭିନୟ କରିବାକୁ ତେତେ ମନ ବଳେ ନାହିଁ । କାରଣ ଉତ୍କଳର ନେତୃସ୍ଥାନୀୟ ବ୍ୟକ୍ତିଙ୍କର ଓଡ଼ିଆ ନାଟକାଭିନୟ ପ୍ରତି ବିତୃଷ୍ଣା ଥାଏ ।

ସୂତ୍ର—କାହିଁକି ?—ବର୍ତ୍ତମାନର ଓଡ଼ିଶାର ନେତୃସ୍ଥାନୀୟ ବ୍ୟକ୍ତିଙ୍କ ମନରେ ସେପରି ଭାବ ନାହିଁ । ତେବେ କେତେକ ନବ୍ୟବାବୁ "ଓଡ଼ିଆ" ନାମ ଶୁଣି ନାସିକା କୁଞ୍ଚିତ କରିଥାନ୍ତି । ସେମାନଙ୍କ କଥା ଛାଡ଼ ।—ସେମାନଙ୍କ କଥାକୁ ଧରିବସିଲେ ଉତ୍କଳର ଅଧୋଗତି ଅନିବାର୍ଯ୍ୟ । ଯେଉଁମାନେ ଉଚ୍ଚଶିକ୍ଷିତ (ଯେଉଁମାନେ କି ଯଥାର୍ଥ ଶିକ୍ଷାର ମର୍ମ୍ମ ଉପଲବ୍ଧି କରିଛନ୍ତି) ସେମାନେ ଉତ୍କଳଭାଷାର ଉନ୍ନତିରେ ମନ ପ୍ରାଣ ଅର୍ପଣ କରିଛନ୍ତି, ଏମାନେ ତ ଦେଖିବେ—ଶୁଣିବେ । ଓଡ଼ିଶାରେ ନାଟକ ନ ଥିଲା କି ରଙ୍ଗମଞ୍ଚ ନ ଥିଲା; କେତୋଟି ଶିକ୍ଷିତ ସନ୍ତାନ ଏ ବିଷୟରେ ମନ ବଳାଇ ନାଟକ ଲେଖିଲେ । ବର୍ତ୍ତମାନ ଉତ୍କଳର ନାନାସ୍ଥାନରେ ଅନେକାନେକ ରଙ୍ଗମଞ୍ଚର ସୃଷ୍ଟି ହେଲାଣି ଓ ହେଉଛି । ଯାହାହେଉ ଆଜି ଗୋଟିଏ ନାଟକର ଅଭିନୟ ଦେଖାଇ ଏହି ସଭାସ୍ଥ ଭଦ୍ର ଦର୍ଶକମଣ୍ଡଳୀଙ୍କ ତୃପ୍ତି ଅକର୍ଷଣ କର, ଏତିକି ମାତ୍ର ମୋର ଅନୁରୋଧ ।

ନଟ—ହେଉ, କେଉଁ ନାଟକର ଅଭିନୟ କଲେ ଆଜି ଭଲ ହେବ ଆପଣ ମନୋନୀତ କରନ୍ତୁ ।

ସୂତ୍ର—ବୃତ୍ରବଧ ନାଟକର ଅଭିନୟ କଲେ ଭଲ ହେବ ।

ନଟ—ବୃତ୍ରବଧ ? ନାଟକଟି ତ ନୂତନ !

ସୂତ୍ର—ହଁ, ନୂତନ ।

ନଟ—ଏହାର ଲେଖକ କିଏ ଏବଂ ବିଷୟ କ'ଣ ?

ସୂତ୍ର—ପାଲଲହଡ଼ା ଷ୍ଟେଟର ପିଉଡେଟରି ଚିଫ୍ ରଜା ଶ୍ରୀ ମୁନିନ୍ଦ୍ରଦେବ ଗଟେଶ୍ୱର ପାଲ ଦେବଙ୍କ ଉତ୍ସାହରେ ଶ୍ରୀ ଜଗନ୍ନାଥ ପଣ୍ଡା କର୍ତ୍ତୃକ ଲିଖିତ । ଅବଶ୍ୟ ଜାଣିଥିବ, ପୂର୍ବକାଳରେ ବୃତ୍ର ନାମକ ଜନୈକ ରକ୍ଷଃପତି ଇନ୍ଦ୍ରତ୍ୱ ପ୍ରାପ୍ତି ନିମନ୍ତେ ଦେବାଧିଦେବ ମହାଦେବଙ୍କ ସମୀପରେ ଏକାଗ୍ର ହୃଦୟରେ ଅସୀମ ସାଧନା କରିଥିଲା । ସେହି ସାଧନାରେ ମହାଦେବ ତୁଷ୍ଟ ହୋଇ ତାହାକୁ ଅମର ଓ ଅଜେୟ ବର ପ୍ରଦାନ କଲେ । ରାକ୍ଷସରାଜ ସିଦ୍ଧମନୋରଥ ହୋଇ ଦେବତାମାନଙ୍କୁ ଅମରାବତୀରୁ ବିତାଡ଼ିତ କରିଦେଇ ନିର୍ଭୟ ହୃଦୟରେ ରାଜପଣ କଲା । ତାହାର ପୁତ୍ର ରୁଦ୍ରପୀଡ଼ ନୈମିଷାରଣ୍ୟରୁ ଶଚୀ ଦେବୀଙ୍କୁ ବଳପୂର୍ବକ ନେଇ ଦୈତ୍ୟପୁରୀରେ ବନ୍ଦନ କରି ରଖିଲା । କି ପୁରାଣରେ—କି ଇତିହାସରେ—କି ସମାଜରେ ଯେ କାଳରେ ଯେଉଁ ସ୍ଥାନରେ ଦେଖ-ସର୍ବ କୋପାନଳରେ ଜଗତର ସମସ୍ତ ଦୁଷ୍ଟ ଲୋକଙ୍କର ଗର୍ବ ଖର୍ବ ହୋଇଛି;

ସୁତରାଂ ବୃତ୍ରର ଦର୍ପ କି ରହନ୍ତା ? ଦେବଗଣ ଶିବଙ୍କ ଶରଣାଗତ ହେବାରୁ ସେ ବୃତ୍ରର ମରଣ-ମାର୍ଗଟି ଦେଖାଇ ଦେଲେ; ତହୁଁ ବୃତ୍ର ସବଂଶେ ହତ ହେଲା ।

ନଟ—ବୃତ୍ର ପରା ଅମର ବର ପାଇଥିଲା ? ତେବେ ହତ ହେଲା କପର ?

ସୂତ୍ର—ଅମର ବର ପାଇଥିଲା ସତ୍ୟ କନ୍ତୁ ବରଦାତା ଯେବେ ବି ପ୍ରତକୂଳ ହେଲେ ତେବେ ବୃତ୍ର ଅମର ରହ ପାରନ୍ତା କ ?

ନଟ—ତେବେ ସେ କପର ହତ ହେଲା ଦୟା ପୂର୍ବକ କହନ୍ତୁ ।

ସୂତ୍ର—ଇନ୍ଦ୍ରାଦ ଦେବଗଣ ଶିବଙ୍କ ଶରଣାଗତ ହେବାରୁ ସେ କହିଲେ 'ଦଧୀଚ ଋଷଙ୍କ ଅସ୍ଥି ଅଣି ବଜ୍ର ଗଠନ କଲେ ବୃତ୍ରର ନଧନ ହେବ । ଇନ୍ଦ୍ର ନଜେ ଯାଇଁ ଦଧୀଚ ଋଷିଙ୍କି ପ୍ରାର୍ଥନା କରବାରୁ ଦୟାବତାର ମହର୍ଷି ପ୍ରାଣ ବସର୍ଜନ କଲେ । ଇନ୍ଦ୍ର ସେହ ଅସ୍ଥି ନେଇ ବଶ୍ୱକର୍ମାଙ୍କୁ ଦେଲେ । ବଶ୍ୱକର୍ମା କର୍ତ୍ତୃକ ଗଠିତ ବଜ୍ରଦ୍ୱାରା ବୃତ୍ର ପଞ୍ଚତ୍ୱ ପ୍ରାପ୍ତ ହେଲା । ଏହାହିଁ ବୃତ୍ରବଧର ସଂକ୍ଷିପ୍ତ ବବରଣ । ତୁମ୍ଭେ ଏହାର ଅଭନୟ ଦେଖାଇ ସମାଗତ ଦର୍ଶକବୃନ୍ଦଙ୍କର ସନ୍ତୋଷ ବଧାନ କର ।

ନଟ—ମୁଁ ଯେ ଏହ ଶିକ୍ଷିତ ଭଦ୍ର ଦର୍ଶକ ଓ ଶ୍ରୋତୃବର୍ଗଙ୍କ ସନ୍ତୋଷ ବଧାନ କର ପାରବ ଏ ଭରସା ଦେଖା ଯାଉ ନାହିଁ । ତେବେ ଯଥାସାଧ ଚେଷ୍ଟାର ତ୍ରୁଟି କରବ ନାହିଁ ।

ସୂତ୍ର—ଚେଷ୍ଟାର ଅସାଧ କଛି ନାହିଁ । ମୁଁ ଯାଉଛ । ତୁମ୍ଭେ ଶୀଘ୍ର ଉଦ୍ୟମ କର ।

ନଟ—ହେଉ ।

ସୂତ୍ର— ( ପ୍ରସ୍ଥାନ । )

( ନଟୀର ପ୍ରବେଶ ।)

ନଟୀ—ଆର୍ଯ୍ୟପୁତ୍ର ! କଅଣ ଭାବୁଛ ?

ନଟ—ଅଉ କଛି ନାହିଁ । ସୂତ୍ରଧର ଅଜ ମୋତେ ଗୋଟିଏ ଗୁରୁତର କାର୍ଯ୍ୟରେ ନଯୋଗ କରଗଲେ ।

ନଟୀ—କ ଗୁରୁତର କାର୍ଯ୍ୟ ?

ନଟ—ମୋତେ ଅଜ ବୃତ୍ରବଧ ନାଟକର ଅଭନୟ ଦେଖାଇବାକୁ ହେବ । ପ୍ରିୟେ ! ତୁମ୍ଭେ ସାହାଯ୍ୟ ନ କଲେ ଏ ଗୁରୁତର ବଷୟରେ ମୁଁ କି କୃତକାର୍ଯ୍ୟ ହୋଇ ପାରବ ?

ନଟୀ—କଛି ଚନ୍ତା ନାହିଁ । ଯଥାସାଧ ସାହାଯ୍ୟ କରବାକୁ ଦାସୀ ପ୍ରସ୍ତୁତ ଅଛ ।

ନଟ—ହେଉ । ଏ ସମୟରେ ତୁମ୍ଭେ ଗୋଟିଏ ଗୀତ ବୋଲ ।

ନଟୀ—ଅଚ୍ଛା ହେଉ; ଶୁଣନ୍ତୁ ।

ରାଗିଣୀ—ଖାମ୍ବାଜ—ତାଳ ଯତି ।

ଜୟ ମାତଃ ! ବୀଣାପାଣି ପଙ୍କଜବାସିନି !
ତାଙ୍କଇଁ କାତରେ ଅଛି ସୁଦୟା ଦାୟିନି ! । ପଦ ।
ଯେ ତୋତେ କରେ ପ୍ରାର୍ଥନା ପୂରଉ ତାର କାମନା
ହୃଦୟେ ଜାଣିଛୁ ମୁଁ ତ କଲ୍ୟାଣ କାରଣି ! । ୧ ।
କରୁଛୁ ମାତଃ ! ପ୍ରାର୍ଥନା ଘୁଞ୍ଚାଇ ମନୋବେଦନା
କର ତତ୍ତ୍ୱ ବନୋଦନ ବଣ ବନୋଦନ ! । ୨ ।
ହେଉଛ ମୋ ମନେ ଭୟ କହୁଛ ପୁଣି ହୃଦୟ
" ନ କର ତୁ ଭୟ, ଛନ୍ତି କୃପା ବଧାୟିନୀ " । ୩ ।
ଜାଣୁଛୁ ମୋର ହୃଦୟ ଦାନକର ମା ! ଅଭୟ
ଶାରଦେ ! ଏ ଭିକ୍ଷା ପୂର୍ଣ୍ଣ—କର ମନେ ଜଣି । ୪ ।

ନଟ—ବୀଣାପାଣି ଆବାହନ ସଙ୍ଗୀତଟି ଉତ୍ତମ ହେଉଛି । ତୁମ୍ଭେ ଯାଅ, ମୁଁ କ୍ଷଣକ୍ଷ-ଣପରେ ଯିବି ।

ନଟୀ—ହେଉ । ( ପ୍ରସ୍ଥାନ । )

ନଟ—ହେ ଦର୍ଶକବୃନ୍ଦ ! ଆଜ ମୁଁ ବୃତ୍ରବଧ ନାଟକର ଅଭିନୟ ଦେଖାଇ ଆପଣମାନଙ୍କୁ ସନ୍ତୋଷ କରି ପାରିବି ଏହା ଦୁରାଶା ମାତ୍ର । ଯାହାହେଉ, ଆଜ ମୁଁ ଉକ୍ତ ନାଟକର ଅଭିନୟ ଦେଖାଇବି । ଆପଣମାନେ ଦୟାପୂର୍ବକ ଉତ୍କର୍ଣ୍ଣ ହୋଇ ଶ୍ରବଣ କରନ୍ତୁ ମୋତେ ଏବଂ ପ୍ରଣେତାଙ୍କୁ କୃତଜ୍ଞତା ପାଶରେ ଆବଦ୍ଧ ରଖିବେ । ଆପଣମାନେ ଯେବେ ଏହି ସଭାରେ ଗଣ୍ଡଗୋଳ ଉପସ୍ଥାପିତ କରନ୍ତି ତେବେ ମୋର ସମସ୍ତ ଶ୍ରମ ପଣ୍ଡ ହେବ । ଅତଏବ ବିନୟପୂର୍ବକ ପ୍ରାର୍ଥନା କରୁଛି ମୋର ଯାହା ୨ ତ୍ରୁଟି ଦେଖିବେ କୃପାପୂର୍ବକ ମୋତେ ମାର୍ଜନା କରିବେ । ଏହିମାତ୍ର ମୋର ନିବେଦନ ।

ପଟକ୍ଷେପଣ ।



# ପ୍ରଥମ ଅଭିନୟ ।

## ପ୍ରଥମ ଦୃଶ୍ୟ—କୈଳାସଧାମ ।

( ମହାଦେବ ଓ ପାର୍ବତୀ ଏକତ୍ର ଆସୀନ ଏବଂ ତ୍ରିଶୂଳ ହସ୍ତେ ନନ୍ଦୀ ଦଣ୍ଡାୟମାନ । )

ନନ୍ଦୀ— ( ଗୀତ )-ରାଗିଣୀ ବେହାଗ—ତାଳ କର୍ଓ୍ୱାଲି ।

ଅଦ୍ଭୁତ ଡମ୍ବୁର ମାୟା ଭୋଳାନାଥ ମହେଶ ମାୟାମୟ ହର, ତବ ମାୟାମୟ ବେଶ । ଘୋଷା । କାହାକୁ ହସାଅ କ୍ଷଣେ କାହାକୁ କନାଅ ନିର୍ଦ୍ଦୟେ, କାହାକୁ ଭ୍ରମାଅ ପ୍ରଭୋ ! ଦେଶ ବିଦେଶ । ୧ । ଏ ଭବେ ମାୟା ଡମ୍ବୁର କେ ବୁଝିବ ମହେଶ୍ୱର, ବୁଝିବ ଯାଁଠାରେ ତବ ସୁ-ଦୟା ଅଛି ଲେଶ । ୨ । ପ୍ରଭୁ, ସଂହାର ସାଧନେ ରତ ଅଛ ଅନୁକ୍ଷଣେ ସଂହାର-ମୂରତି ତବ ଶାଶ୍ୱତ ବ୍ୟୋମକେଶ । ୩ ।

ପାର୍ବତୀ— ଆଶୁତୋଷ ! ଯେ ଆପଣଙ୍କୁ ଯେଉଁ ମୁହୂର୍ତ୍ତରେ ବର ପ୍ରାର୍ଥନା କରେ ତତ୍‌କ୍ଷଣାତ୍ ତାହାର ମନସ୍କାମ ପୂର୍ଣ୍ଣ କରି ଆପଣ ଆଶୁତୋଷ ନାମର ସାର୍ଥକତା ସମ୍ପାଦନ କରିଥାନ୍ତି । କିନ୍ତୁ ସେ ସେହି ବର ପାଇବାର ଉପଯୁକ୍ତ କି ନା ତାହା କି ଠିକ ଏ ଭାବିବାର ଉଚିତ ନୁହେଁ ?

ମହା— ପ୍ରିୟେ ! ଏ ପ୍ରଶ୍ନର ଉଦ୍ଦେଶ୍ୟ କଅଣ ତାହା ବିଶଦରୂପେ ପ୍ରକାଶ କର ।

ପାର୍ବତୀ— ଦୈତ୍ୟେଶ୍ୱର ବୃତ୍ର ଯେ ଅମରାବତୀ ଅଧିକାର କଲାଣି ତାହା କି ଆପଣଙ୍କୁ ବିଦିତ ନାହିଁ ? ତାହାର ପୁତ୍ର ରୁଦ୍ରପୀଡ଼ ନୈମିଷାରଣ୍ୟରୁ ଶଚୀ ଦେବୀଙ୍କୁ ନେଇ ଦୈତ୍ୟପୁରରେ ବନ୍ଧନ କରି ରଖିଛି, ଏହା କି ଆପଣ ଜାଣୁ ନାହାନ୍ତି ? ଶଚୀ ଦେବୀଙ୍କର କାତର କ୍ରନ୍ଦନ ଧ୍ୱନି କି ଆପଣଙ୍କ କର୍ଣ୍ଣ-କୁହରରେ ପ୍ରବେଶ କରି ନାହିଁ ? ଏତ ବଡ଼ ଆଶ୍ଚର୍ଯ୍ୟ କଥା ! ଏ ସବୁ କି ଆପଣଙ୍କ ବର ପ୍ରଦାନର ଫଳ ନୁହେଁ ?

ମହା— ପ୍ରାଣାଧିକେ ! ମୁଁ ସେ ସମସ୍ତ ଜାଣି ପାରୁ'ଛି । ତାହାର ପ୍ରତିକାର ଚିନ୍ତାରେ ମଗ୍ନ ଥିଲି । ତୁମ୍ଭେ ସ୍ମରଣ କରାଇଦେଲ ।

( ଇନ୍ଦ୍ର, ବରୁଣ, କୁବେର ଓ ଯମ ପ୍ରଭୃତି ଦେବଗଣଙ୍କ ପ୍ରବେଶ, ମହାଦେବ ଓ ପାର୍ବତୀଙ୍କୁ ଅଭିବାଦନ ଓ ଜାନୁପାତପୂର୍ବକ ଉପବେଶନ । )

ଇନ୍ଦ୍ର— ପ୍ରଭୋ ! ବୃତ୍ରର ଦୋର୍ଦ୍ଦଣ୍ଡ ପ୍ରତାପରେ ସୁରପୁରୀ ଉଚ୍ଛନ୍ନ । ଯେଉଁ ସ୍ଥାନ ଦେବପୁରୀ ଥିଲା ସେ ସ୍ଥାନ ଆଜି ବୃତ୍ରର ଲୀଳା ଭୂମିରେ ପରିଣତ ହୋଇଛି- ଦେବତାମାନେ ବର୍ତ୍ତମାନ ଭୀଷଣ ନରକ ଯନ୍ତ୍ରଣା ଭୋଗ କରୁ'ଛନ୍ତି— ସମ୍ପ୍ରତି ବିକ୍ଷିପ୍ତ ହୋଇ ପଡ଼ି'ଛନ୍ତି । ପ୍ରଭୋ ! ବୃତ୍ରକୁ ଦେବଦ୍ରୋହ ପଦ ପ୍ରଦାନ

କରିବାହାରି ଯଦି ଅମରାବତୀ ସୁରକ୍ଷିତ ହୁଏ ତେବେ ଦାସର କିଛି ଅପତ୍ତି ନ ଥିଲା । କିନ୍ତୁ ସେ ସୁରପୁରୀ ଛାରଖାର କରିବାକୁ ଜାଣାଇବାକୁ ଆସିଛି ମାତ୍ର ।

ବରୁଣ— ଯେକି ଏ ତ୍ରିଭୁବନର ସଂହାରକର୍ତ୍ତା— ଯେକି ଦେବଧାମର ସ୍ରଷ୍ଟା ଓ ରକ୍ଷାକର୍ତ୍ତା—ଯାହାଙ୍କ ନାମ ସ୍ମରଣ କଲେ ହୃଦୟରୁ ସକଳ ବିଷାଦ ଦୂରୀଭୂତ ହୁଏ ସେ ଅବଶ୍ୟ ବିହିତ ବିଚାର କରିବେ ।

କୁବେର—ପ୍ରଭୋ ! ସଂହାର ମୂର୍ତ୍ତି ଧାରଣ ନ କଲେ ଆଉ ଦେବଧାମ ରକ୍ଷାପାଇବା ଦୁଷ୍କର । ସମସ୍ତ ପ୍ରଭୁଙ୍କ ଇଚ୍ଛା ।

ଯମ—ଯଦି ପ୍ରଭୁ ସେହି ଦୈତ୍ୟେଶ୍ୱରଙ୍କୁ ବର ପ୍ରଦାନ କରି ନଥା'ନ୍ତେ ତେବେ ତାହାର ନାମ ପର୍ଯ୍ୟନ୍ତ ମୁଁ ଆଜିଯାଏ ରଖି ନଥା'ନ୍ତି; କିନ୍ତୁ—

ମହା—ଆଉ ପ୍ରୟୋଜନ ନାହିଁ । ସମସ୍ତ ଅବଗତ ଅଛି । ବର୍ତ୍ତମାନ ସେହି ଦୈତ୍ୟର ଦର୍ପ ଚୂର୍ଣ୍ଣ କରିବା ବିଷୟରେ ଚିନ୍ତା କର ।

ଇନ୍ଦ୍ର—ପ୍ରଭୋ ! ବୃତ୍ରର ଦର୍ପରେ ବର୍ତ୍ତମାନ ତ୍ରିଭୁବନ କମ୍ପମାନ; ତାହାର ଦର୍ପ ଚୂର୍ଣ୍ଣ କରିବାକୁ କି ଅମ୍ଭମାନଙ୍କର ସାମର୍ଥ୍ୟ ଅଛି !

ମହା— ଆଚ୍ଛା ହେଉ । ( କିଛିହି ଭାବନା କରି ) ବର୍ତ୍ତମାନ ତୁମ୍ଭେ ଯାଅ— ଦଧୀଚି ଋଷିଙ୍କୁ ପ୍ରାର୍ଥନା କର— ଯଦିବା ସେ ତାଙ୍କର ଅସ୍ଥି ଖଣ୍ଡିଏ ପ୍ରଦାନ କରନ୍ତି ତେବେ ବୃତ୍ର ସବଂଶେ ହତ ହୋଇ ପାରିବ । ନଚେତ ଉପାୟ ନାହିଁ ।

ଇନ୍ଦ୍ର— ପ୍ରଭୋ ! ସଂସାରରେ କେତେ ଜଣ ନିଜର ଜୀବନ ଉତ୍ସର୍ଗ କରି ପରର ଉପକାର କରି ଥା'ନ୍ତି ? ମୁଁ ବା ଦଧୀଚି ଋଷିଙ୍କୁ କିପରି ଏ କଥା କହିବି ?

ମହା— ସଂସାରର ହିତ ପାଇଁ ଦଧୀଚି ଋଷିଙ୍କ ଆବିର୍ଭାବ । ତୁମ୍ଭେ ପ୍ରାର୍ଥନା କଲାକ୍ଷଣି ସେ ତାଙ୍କର ଅସ୍ଥି ପ୍ରଦାନ କରିବେ । ଏଥିରେ ସନ୍ଦେହ ନାହିଁ ।

ଇନ୍ଦ୍ର— ପ୍ରଭୋ ! ତେବେ ଉଦ୍ଦିଷ୍ଟ ସ୍ଥାନକୁ ଯାଉଛି ।

ମହା— ହଁ, ଯାଅ ।

( " ଜୟ ଶିବ ଶମ୍ଭୋ ! " କହି ଦେବଗଣଙ୍କ ପ୍ରସ୍ଥାନ । )

ପା— ଶଚୀ ଦେବୀଙ୍କ କ୍ରନ୍ଦନ ଧ୍ୱନି ଶୁଣି କାହାର ହୃଦୟ ସମ୍ଭାଳି ହେବ ? ଓ ହୋ ! ତାଙ୍କର ଯେ ବିକଳତା ! ଯେ ଦୁଃଖ ! ଯେ କଷ୍ଟ !!

ମହା—ପ୍ରିୟେ ! ଶଚୀ ଦେବୀଙ୍କର ମାନସିକ ଓ କାୟିକ ଯାତନା ନ ଘଟିଲେ ବୃତ୍ର ବଂଶ ଧ୍ୱଂସ ହୋଇ ନ ପାରେ । ଆଉ ଅଳ୍ପଦିନ ମଧ୍ୟରେ ତାଙ୍କର ସମସ୍ତ ଦୁଃଖ ଦୂର ହେବ । କିଛି ଚିନ୍ତା କର ନାହିଁ ।

ନନ୍ଦୀ—ନାହିଁ କି ପ୍ରଭୁ, ଶଚୀ ଦେବୀଙ୍କର ନାନା ଦୁଃଖ ଘଟିଲେ ଦୈତ୍ୟ ବଂଶ ଧ୍ୱଂସ ହେବ ନହେଲେ ହେବ ନାହିଁ ? ଏହାର କାରଣ ମୁଁ ତ କିଛୁ ବୁଝି ପାରୁ ନାହିଁ ? ପ୍ରଭୋ ! ବର୍ତ୍ତମାନ ଶଚୀ ଦେବୀଙ୍କର ଦୁଃଖ ହରଣ କରନ୍ତୁ; ନାହିଁ ତ ଦେବପୁରର ଧ୍ୱଂସ ହେବ ।

ମହା—ନାହିଁ ।—ଆଉ ତାଙ୍କର କିଛି ବିଶେଷ କଷ୍ଟ ହେବ ନାହିଁ । ଋକ୍ଷଃବଂଶ ମୋହର କୋପାନଳରେ ଧ୍ୱଂସ ପ୍ରାୟ—ଅପେକ୍ଷା କର—ଦେଖ ।

ପଟ କ୍ଷେପଣ ।

—*○*—

ପ୍ରଥମଅଭିନୟ ।

ଦ୍ୱିତୀୟ ଦୃଶ୍ୟ—ଅରଣ୍ୟ ।

( ଅପ୍ସରୀମାନଙ୍କର ପ୍ରବେଶ, ନୃତ୍ୟ ଓ ଗୀତ । )

ବିବିଧ ସୁମନ କାନନ ଉଦ୍ୟାନ ଧରିଛି କେମନ୍ତ ପ୍ରକାରେ, ନିସର୍ଗର ଶୋଭା ସୁର ମନ ଲୋଭା ଅଟଇ ସଖି ଏ ପ୍ରାନ୍ତରେ । ପଦ । ଶାଶ୍ୱତ ମଳୟ କର କି ଅଳୟ ରହିତ କାନନ ଦେଶରେ, ରହି ପିକବରେ ଚୁତ ତରୁଡାଳେ ଗାଉଛି ପଞ୍ଚମ ତାନରେ । ୧ । ତୋଳ ତୋଳ ସଖି ! ଶୀଘ୍ର ଖୁସି ଦେଖି ଦେବା ବିଶ୍ୱରାଜ ପଦରେ ; ନାନାଜାତି ଫୁଲ ହୋଇଣ ଉତ୍ଫୁଲ୍ଲ ଚହଟେ ପବନ ସ୍ପର୍ଶରେ । ୨ । ଦେଇ ପୁଷ୍ପମାଳା ସତୀ ଶଚୀ ଗଳା ମଣ୍ଡିଥାନ୍ତେ ମୁଦ୍ରମନରେ, ଦୁଷ୍ଟ ବୃକ ସୁତ ରୁଦ୍ରପୀଡ଼ ଦୈତ୍ୟ ବାନ୍ଧି ନେଇଗଲା କୌଶଳେ । ୩ ।

୧ ମ—( ଦୂରକୁ ଅନାଇବାପରେ ଅନ୍ୟଙ୍କୁ ଚାହିଁ ) ଏହି ଦେବରାଜ ଇନ୍ଦ୍ରଙ୍କ ପ୍ରାୟ ଦେଖାଯାଉଛନ୍ତି ।

୨ ୟ—ସମ୍ଭବ ଦେବରାଜ ଇନ୍ଦ୍ର ।

୩ ୟ—ସମ୍ଭବ କଣ ? ନିଶ୍ଚୟ ତ ।

୧ ମ—ହାୟ ! ଦେବରାଜ କେତେ କଷ୍ଟ ଭୋଗ କଲେଣି ।

( ଇନ୍ଦ୍ରଙ୍କ ପ୍ରବେଶ । )

୨ ୟ—ଦେବରାଜ ! ଏଠାରେ ବସନ୍ତୁ—ଏହିଠାରେ ଅମରାବତୀ ସିଂହାସନ ମଣ୍ଡନ କରନ୍ତୁ ।

୪ ର୍ଥ— ଭଲ ହେବ—ଅନେକ ଦିନ ହେବ ଦେବରାଜ ଭ୍ରମଣ କରି ଦେହ ଶୀର୍ଣ୍ଣ ହୋଇ ଗଲାଣି—ଅଧର ବିବର୍ଣ୍ଣ ହେଲାଣି—ଚକ୍ଷୁ କୋଟର ଗତ ହେଲାଣି ଏଣୁଥିରେ କିଛିଦିନ ବିଶ୍ରାମ କରନ୍ତୁ ।

୩ ଯୃ—ହଁ ବିଶ୍ରାମ କରିବେ ?—ବୃତ୍ର ଅମରାବତୀ ଭୋଗ କରିବ ।—ତପରି ସେହି ବୃତ୍ରର ଦର୍ପ-ଚୂର୍ଣ୍ଣ ହେବ ତାହାର ଉଦ୍ୟୋଗ କଲେ ସିନା ହେବ ।— ଅତ୍ର ଦେବରାଜ ଏହି ଅରଣ୍ୟ ପ୍ରଦେଶରେ ଅଭିଷିକ୍ତ ହେବେ, ଦୁର୍ଦ୍ଦାନ୍ତ ବୃତ୍ର ନିଷ୍କଣ୍ଟକ ହୋଇ ଅମରାବତୀ ଭୋଗ କରିବ ।—ଏହାକି ସହ୍ୟ ହେବ ?

ଇନ୍ଦ୍ର—ଠିକ୍ କହିଲ—ମନର କଥା କହିଲ ।-ବର୍ତ୍ତମାନ ମୁଁ ସେହି ଚେଷ୍ଟାରେ ଅଛି । କିନ୍ତୁ କଅଣ କରିବ ?—ବିଧାତାର ଅନୁଗ୍ରହ କରିବ କି ଏ ଭୋଗ କରିବ ?

୧ମ—ଦେବରାଜ ! ବୃତ୍ରର ଦର୍ପ ଚୂର୍ଣ୍ଣ କରିବାର ଉପାୟ କରନ୍ତୁ ।—ଶଚୀ ଦେବୀଙ୍କୁ ଉଦ୍ଧାର କରିବାର ଯତ୍ନ କରନ୍ତୁ ।—ଅମରାବତୀ ରକ୍ଷା ହେଉ । ( ଇନ୍ଦ୍ରଙ୍କୁ ପୁଷ୍ପମାଳା ପ୍ରଦାନ । )

ଇନ୍ଦ୍ର—ସେହି ଉଦ୍ଦେଶ୍ୟରେ—ଅସିଅଛି ।—ଦଧୀଚି ମହର୍ଷିଙ୍କ ଆଶ୍ରମ କେଉଁଠାରେ ଏବଂ କେତେ ଦୂରରେ କହି ପାରିବ କି ?

୨ଯୃ—ଦଧୀଚି ମହର୍ଷିଙ୍କ ଆଶ୍ରମ ଅଳ୍ପ ଦୂରରେ ।—(ହାତ ଦେଖାଇ) ଏହି ଦିଗରେ ।

୧ମ—ଦେବରାଜ ! ମହର୍ଷି ଭାରି ଦୟାଳୁ । ଯେପରି କି ଦୟାରେ ତାଙ୍କର ହୃଦୟ— ଅସ୍ଥି—ମଜ୍ଜା—ମାଂସ—ମେଦ—ଚର୍ମ୍ମ ସକଳ ଗଠିତ ହୋଇଛି । ସେ ନିଶ୍ଚୟ ଆପଣଙ୍କ ମନୋବେଦନା ଦୂର କରିବେ, ସନ୍ଦେହ ନାହିଁ ।

ଇନ୍ଦ୍ର ମୁଁ ସେହି କଥା ଦେବଦେବଙ୍କଠାରୁ ଶୁଣି ମହର୍ଷିଙ୍କ ପାଖକୁ ଯାଉଛି ।

୧ମ—ଶୀଘ୍ର ଗମନ କରନ୍ତୁ ।

( ଇନ୍ଦ୍ରଙ୍କ ଗମନ ଓ ପଟ ପରିବର୍ତ୍ତନ । )

—୦*୦*୦—

ତୃତୀୟ ଦୃଶ୍ୟ—ଆଶ୍ରମ ପ୍ରଦେଶ ।

( ଦଧୀଚି ଋଷି ତପୋମଗ୍ନ ଏବଂ ଚତୁର୍ଦ୍ଦିଗରେ ଶିଷ୍ୟମାନେ ଯେ ଯାହା କାର୍ଯ୍ୟରେ ନିୟୋଜିତ । )

୧ମ ଶିଷ୍ୟ—( ନେପଥ୍ୟକୁ ଅନାଇଁ ) ଭାଇ ! ଏଆଡ଼କୁ କିଏ ଜଣେ ଆସୁଅଛି । ( ଇନ୍ଦ୍ରଙ୍କର ପ୍ରବେଶ ଓ ଦଣ୍ଡାୟମାନ । ) ତୁମ୍ଭେ କିଏ ?

ଇନ୍ଦ୍ର—ମୁଁ ହତଭାଗ୍ୟ ଇନ୍ଦ୍ର ।

୨ଯୃ—କିଏ ଦେବରାଜ ଇନ୍ଦ୍ର ? କି ଉଦ୍ଦେଶ୍ୟରେ ଏଠାକୁ ଶୁଭାଗମନ ?

ଇନ୍ଦ୍ର—ମହର୍ଷିଙ୍କଠାରେ ମୋର କିଛି ନିବେଦନ ଅଛି ।

୩ଯୃ—କି ନିବେଦନ ?

୧ମ—ତୋତେ ପୁଣି କ କହିଲେ କ ଚଳେ ।

୩ୟ ଶି—ତୁ କାହିଁକି ମୋ କଥାରେ କଥା କହୁ କରେ ? ମୁଁ ପରା ତୋତେ ହଜାର-ଥର ମନା କଲିଣି ମୋ କଥାରେ କଥା କହିବୁ ନାହିଁ । ମୁଁ ତ ଦେବରାଜଙ୍କ ପଦ୍ମ୍‌ରୁଛି । ତୋର . କ ଗଲା ?—ତୁ କାହିଁକ ରାଗି ଉଠୁଛୁ ?—ତୋ ଦେହରେ କଅଣ ବେଶି ରାଗ ଅଛି ?

୨ୟ ଶି—ଭାଇ ! କାହିଁକି ଏପରି କଳି ଲଗାଉଛ ? ସେ ଯାହାଙ୍କ ପାଖକୁ ଆସିଛନ୍ତି ତାଙ୍କ ଆଗରେ କହିବେ ସିନା—ତୁ କାହିଁକି ଆଗେ ଶୁଣିବାକୁ ବାଉଳା ହେଉ ? ଶୁଣିବୁଟି ଏତେ ବ୍ୟସ୍ତ କାହିଁକ ?

୩ୟ ଶି—ହେଉ, ତୋହର କଥା ହେଲା ।

ଇନ୍ଦ୍ର—( ସ୍ୱଗତ ) ଆହା ! ଏ ସ୍ଥାନଟି କ ରମଣୀୟ ! ତିନ୍ତ୍ରାଣୀଳଲୋକର ଯଦି ମନୋମୁଗ୍ଧକର ସ୍ଥାନ ଥାଏ ତାହା କେବଳ ଏହି ସ୍ଥାନ—କ ସୁର କ ଅସୁର କ ଯକ୍ଷ—କ ଗନ୍ଧର୍ବ—କ ପଶୁ—ପକ୍ଷୀ—କୀଟ—ପତଙ୍ଗ ସମସ୍ତଙ୍କର ଏହି ସ୍ଥାନ ଅରାଧ୍ୟ । ସ୍ୱର୍ଗର ନନ୍ଦନବନ ଏହାର ତୁଳନାରେ ଅତି ତୁଚ୍ଛ—ଅତି ହେୟ ! ଏହାର ନିସର୍ଗ ଶୋଭା ଦେବଲୋକରେ ସୁଦୁର୍ଲ୍ଲଭ ! ଏ ସ୍ଥାନର ପବିତ୍ରତା କଳୁଷ ନାଶ କରିବ—ପାପ ହୃଦୟକୁ ସ୍ପର୍ଶ କରିବ ନାହିଁ । ( କୌଣସି ଏକ ପର୍ବତକୁ ଅନାଇଁ ) ଏହି ଯେ ପର୍ବତ ସମ୍ମୁଖରେ ଦେଦୀପ୍ୟମାନ ଏହାର ନିସର୍ଗ—ଶୋଭା ଅତୁଳ ରମଣୀୟ ।—ଏ ପର୍ବତଠାରୁ ହୃଦୟ କ ଶିକ୍ଷା ଲାଭ ନ କରିବ ?—ସବୁ ଶିଖି ପାରେ ।—ଦୟା, କ୍ଷମା, ଔଦାର୍ଯ୍ୟ, ଗାମ୍ଭୀର୍ଯ୍ୟ, ବିନୟ, ସହିଷ୍ଣୁତା, ନିର୍ମତ୍ସରତା ଓ ଜିତେନ୍ଦ୍ରିୟତାଦି ସକଳ ଦେବୋପମ ଗୁଣାବଳୀ ଶିକ୍ଷା କରି ପାରେ । କେତେ ହିଂସ୍ରପଶୁ ଏହି ପର୍ବତର ଗହ୍ୱରମାନଙ୍କରେ ବାସ କରୁଅଛନ୍ତି ।—କେତେ ପଶୁ, କେତେ କୀଟ ପତଙ୍ଗ ଏହାର ବାହାରେ ଓ ଅଭ୍ୟନ୍ତରରେ ରହିଛନ୍ତି ।—ଗିରିବର ଅସୀମ ଦୟା ବହି ସେମାନଙ୍କୁ ସ୍ଥାନ ଦେଇଛି ଓ ଅସୀମ କ୍ଷମାଗୁଣରେ ସେମାନଙ୍କ ଦୌରାତ୍ମ୍ୟରେ ବିଚଳିତ ନ ହୋଇ ବରଂ ମାର୍ଜ୍ଜନା କରୁଛି । କେତେ ଝଡ଼,—କେତେ ବର୍ଷା,—କେତେ ଶୀତ,—କେତେ ଗ୍ରୀଷ୍ମ ଗିରିବର ସହ୍ୟ କରୁଛି ! ଗିରିରାଜ ! ଧନ୍ୟ ତୋହର ସହିଷ୍ଣୁତା ! ଧନ୍ୟ ତୋହର ଉଦାରତା ! ଧନ୍ୟ ତୋହର ଗମ୍ଭୀରତା !! ତୋହଠାରେ କେଉଁ ସୁ-ଗୁଣ ନାହିଁ ?—ସକଳ ଅଛି ।—କିନ୍ତୁ ଦେଖିବାକୁ କାହାର ଚକ୍ଷୁ ନାହିଁ । ଚତୁର୍ଦ୍ଦିଗରେ ଫୁଲ ଫଳ ପରିଶୋଭିତ ବିସ୍ତୀର୍ଣ୍ଣ ଅରଣ୍ୟରାଜି—ଝର୍ଣ୍ଣର ନିନାଦକାରୀ ନିର୍ଝରମାଳା—ବୃକ୍ଷର ଶାଖା ପ୍ରଶାଖାମାନଙ୍କରେ ବସନ୍ତଦୂତମାନଙ୍କର ଶ୍ରୁତି ମନୋହାରୀ ସଙ୍ଗୀତର ପଞ୍ଚମତାନ, ଏସବୁ ଦେବଲୋକରେ ମଧ୍ୟ ଦୁର୍ଲ୍ଲଭ । ବିଧାତାର କି ବିଚିତ୍ର ସୃଷ୍ଟି !

ଯାହା ଦେବଲୋକରେ ନାହିଁ ତାହା ମର୍ତ୍ତ୍ୟଲୋକରେ, ଯାହା ମର୍ତ୍ତ୍ୟଲୋକରେ ନାହିଁ ତାହା ଦେବଲୋକରେ ଅଛି । (ଦଧୀଚି ଋଷିଙ୍କୁ ଅନାଇଁ) ବାସ୍ତବରେ ଏହି ସ୍ଥାନ ଋଷିମାନଙ୍କର ଯଥାର୍ଥ ବାସୋପଯୋଗୀ ।—ତପସ୍ୟା ବା ସାଧନାର ଯଥାର୍ଥ ନିର୍ଜ୍ଜନସ୍ଥାନ ! ଅହୋ ! କି ଗାଢ଼ ତପସ୍ୟା ! କି ଅଦ୍ଭୁତ ସାଧନା !! କି ଅଦୃଷ୍ଟପୂର୍ବ ଓ ଅଶ୍ରୁତପୂର୍ବ ଏକାଗ୍ରତା !! ନିର୍ବାଣ ପ୍ରାପ୍ତି ନିମନ୍ତେ କି ନିବିଷ୍ଟ ଚିତ୍ତତା ଓ କଠୋର ସଂଯମନା !!! ମୁଁ ଯେ ଅସଂଖ୍ୟ ନଦ ନଦୀ,—ବିସ୍ତୀର୍ଣ୍ଣ ପ୍ରାନ୍ତରରାଜି—ଅସଂଖ୍ୟ ପର୍ବତମାଳା—ଅସଂଖ୍ୟ ଉପତ୍ୟକା—ଶ୍ୟାମଳ ତୃଣ-ପରିଶୋଭିତ ସମଭୂମି ଅତିକ୍ରମ କରି ଦୁଃଖ ଅନୁଭବ କରିଥିଲି ଏଠାରେ ସେ ସମସ୍ତ ଦୂରୀଭୂତ ହେଲା । ଯେପରି କି ଏହି ସ୍ଥାନରେ ରହିବାକୁ—ଏହି ମହର୍ଷିଙ୍କୁ ଆରାଧନା କରିବାକୁ—ଚିର ବୈରାଗୀ ହେବାକୁ ମନ ସ୍ୱତଃ ପ୍ରଧାବିତ ହେଉଛି । କିନ୍ତୁ ଶଚୀର କ୍ରନ୍ଦନଧ୍ୱନି—ଦେବତାମାନଙ୍କର ବ୍ୟାକୁଳତା—ମହାଦେବଙ୍କ ଆଦେଶପାଳନ ତାହା କରାଇ ଦେବ ନାହିଁ । (ବ୍ୟାକୁଳ ହୋଇ) ଦେବାଧିଦେବ ମହାଦେବ ! ମହର୍ଷିଙ୍କୁ ମୋହର ମନୋଗତଭାବ କିପରି ପ୍ରକାଶ କରିବି ?—ଇଚ୍ଛା ତ ହେଉ ନାହିଁ । ଯଦି ମୋହର ଅସ୍ଥିଦ୍ୱାରା ଦୁଷ୍ଟ ବୃତ୍ରର ପ୍ରାଣ ସଂହାର ହୋଇ ପାରନ୍ତା ତେବେ ମୁଁ ଅକାତରେ ପ୍ରଦାନ କରନ୍ତି । କିନ୍ତୁ ମୋର ସେ ସୌଭାଗ୍ୟ ନାହିଁ । ବରଂ ବୃତ୍ରର ପ୍ରତାପରେ ଦେବପୁରୀ ବିଧ୍ୱସ୍ତ ହେବ—ସତୀ ଶଚୀ ବନ୍ଧନରୁ ମୁକ୍ତ ନ ହେବେ—ମୁଁ ଏହି ନିଷ୍ଠୁର କଥା କେବେହେଁ ମହର୍ଷିଙ୍କୁ ପ୍ରକାଶ କରିବି ନାହିଁ । (ଚିନ୍ତାମଗ୍ନ ହୋଇ ଦଣ୍ଡାୟମାନ ।)

ଦଧୀଚ—(ତପୋଭଙ୍ଗାନ୍ତେ ଇନ୍ଦ୍ରଙ୍କୁ ଅନାଇଁ) କିଏ ଦେବରାଜ ଇନ୍ଦ୍ର ! କି ଉଦ୍ଦେଶ୍ୟରେ ମୋର ଆଶ୍ରମକୁ ଆଗମନ କରିଅଛନ୍ତି ? ଅଦ୍ୟ ଆପଣଙ୍କ ପଦ-ସ୍ପର୍ଶରେ ମୋର ଆଶ୍ରମ ପବିତ୍ର ହେଲା । (ଖଣ୍ଡେ ମୃଗଚର୍ମ ଦେଇ) ଏହି ଆସନରେ ଉପବେଶନ କରନ୍ତୁ । ଆପଣଙ୍କ ଯୋଗ୍ୟାସନ ମୁଁ କାହିଁ ପାଇବି ? କି ଉଦ୍ଦେଶ୍ୟରେ ଆସିଅଛନ୍ତି ଦୟାପୂର୍ବକ ପ୍ରକାଶ କରନ୍ତୁ ।

ଇନ୍ଦ୍ର—(ସ୍ୱଗତଃ) ଶ୍ମଶାନ ବିହାରୀ ମହାଦେବ ! ତୁମ୍ଭର ଆଦେଶ ଲଙ୍ଘନୀୟ ସତ୍ୟ କିନ୍ତୁ ଅଭାଗା ଇନ୍ଦ୍ର ସେ ଆଦେଶ ପ୍ରତିପାଳନ କରିବାକୁ ସମ୍ପୂର୍ଣ୍ଣ ଅକ୍ଷମ । କେବେହେଁ ପ୍ରକାଶ କରିବି ନାହିଁ । (ମୌନାବଲମ୍ବନ)

ଦଧି—(ଶଚୀନାଥ ! ପ୍ରକାଶ କରନ୍ତୁ ।— କି ଉଦ୍ଦେଶ୍ୟରେ ଆପଣ ଆସିଅଛନ୍ତି । ଭୟ ନାହିଁ —ଲଜ୍ଜା ନାହିଁ —ଚିନ୍ତା ନାହିଁ ।

ଇନ୍ଦ୍ର—(ପୁନର୍ବାର ମୌନାବଲମ୍ବନ ।)

( ତପସ୍ୱୀ ବେଶେ ଅଶ୍ୱିନୀକୁମାର ଓ ଜନୈକ ଋଷିଙ୍କ ପ୍ରବେଶ )

ଦଧି—( ପୁନର୍ବାର ତପୋମଗ୍ନ, ତପୋଭଙ୍ଗାନ୍ତେ ପରମାହ୍ଲାଦ ବାଣୀରେ ) ଦେବ-ରାଜ ! ଅପଣଙ୍କ ମନୋଗତଭାବ ଜାଣିଲି—ଆଉ କହିବାକୁ ହେବ ନାହିଁ । ସୁନାଶିର ! ସଂସାରରେ ଜନ୍ମଗ୍ରହଣ କରି ମୁଁ ସର୍ବଦା ଅସ୍ଥିରଭାବରେ କାଳ-ଯାପନ କରୁଛି । ମୋର ଅସ୍ଥି ସାହାଯ୍ୟରେ ରକ୍ଷପତି ବୃତ୍ରର ଅତ୍ୟା-ଚାରରୁ ଅମରାବତୀ ରକ୍ଷା ପାଇବ —ସତୀ ଶଚୀଦେବୀଙ୍କର ଉଦ୍ଧାର ହେବ, ଏହାଠାରୁ ବଳି ମୋର ଅଧିକ କି ସୌଭାଗ୍ୟ ଅଛି ? ଏତେବେଳକୁ ଆପଣ ପିତ୍ରା ମନୋରଥ ହୋଇ ଫେରିଯାଇ ପାରନ୍ତେଣି; କିନ୍ତୁ କାତର ହୋଇ ପ୍ରକାଶ କଲେ ନାହିଁ । ମୁଁ ତ ସେଥିପାଇଁ ଦୁଃଖିତ ନୁହେଁ । ମୋର ଜୀବନ ଚରିତାର୍ଥ ହେଲା । ମୋ ଯୋଗୁଁ ସୁରପୁରୀ ରକ୍ଷା ପାଇବ —ସତୀ ଶଚୀ ଦେବୀଙ୍କ ଉଦ୍ଧାର ହେବ, ଇହଲୋକରେ ମୁଁ ଧନ୍ୟ ।—ଆପଣ ଯେ ଏହି ଏହି ଅଭିପ୍ରାୟ ସ୍ମରଣ କରାଇଦେଲେ ସେଥିପାଇଁ ଆପଣଙ୍କୁ ସହସ୍ର ଧନ୍ୟ-ବାଦ । ( ଶିଷ୍ୟମାନଙ୍କୁ ଅନାଇଁ ) ଶିଷ୍ୟଗଣ ! ଏତେଦିନଯାଏ ମୁଁ ତୁମ୍ଭ-ମାନଙ୍କୁ ବେଦ ଓ ଅନ୍ୟାନ୍ୟ ଶାସ୍ତ୍ରାଦି ଶିକ୍ଷା ଦେଉଥିଲି । ପ୍ରାୟ ତୁମ୍ଭମାନଙ୍କର ସମସ୍ତ ବିଦ୍ୟା ଅଧୀତ ହୋଇଛି । ଏବେ ମୁଁ ତୁମ୍ଭମାନଙ୍କର ମାୟା ବନ୍ଧନ ଛିନ୍ନ କରି ଇହଲୋକରୁ ଅପସୃତ ହୋଇ ପଞ୍ଚଭୂତରେ ଲୀନ ହେବି । ସେଥିପାଇଁ ତୁମ୍ଭେମାନେ ଦୁଃଖ ଅନୁଭବ କରିବ ନାହିଁ । କାତର ହେବ ନାହିଁ । ଶିଷ୍ୟ-ବୃନ୍ଦ ! ଏତେଦିନଯାଏ ମୁଁ ତୁମ୍ଭମାନଙ୍କୁ ଶିକ୍ଷା ଓ ଦୀକ୍ଷା ଦେଉଥିଲି । ତୁମ୍ଭେ-ମାନେ ମୋର ଯଥେଷ୍ଟ ସେବା ସୁଶ୍ରୁଷା କରିଛ । ଏହିମାତ୍ର ତୁମ୍ଭମାନଙ୍କର ଗୁରୁ ସେବାର ଚରମକାଳ ।—ମୁଁ ଆଶା ଓ ବିଶ୍ୱାସ କରେଁ ତୁମ୍ଭେମାନେ ଶିଷ୍ୟଜନୋଚିତ ଗୁରୁ ସେବାର ଚରମ ସୀମାର ପରା କାଷ୍ଠା ଦେଖାଇବ । ମୋ ପାଇଁ ଶୀଘ୍ର ଚିତାର ଆୟୋଜନ କର ।

ଅଶ୍ୱିନୀକୁମାର—( ଦଧୀଚିଙ୍କୁ ଅନାଇଁ କର ଯୋଡ଼ି ) ପ୍ରଭୋ ! ବୃଥାରେ ପର ପାଇଁ ନିଜର ବହୁମୂଲ୍ୟ ଜୀବନକୁ କାହିଁକି ବିସର୍ଜନ କରିବେ ? ଆପଣ କାହାଠାରେ କିଛି ଦୋଷ କରି ନାହାନ୍ତି । ( ଇନ୍ଦ୍ରଙ୍କ ) ଯାଅ—ଚାଲିଯାଅ । ଜଣେ ମହର୍ଷିଙ୍କୁ ହତ୍ୟା କରିବାକୁ ଆପଣ ଟିକିଏ ଲଜ୍ଜା ବୋଧ କରୁ ନାହାନ୍ତି ?

ଦଧୀ — ବୃଥାରେ କାହିଁକି ଇନ୍ଦ୍ରଙ୍କଠାରେ ରାଗ କରୁଛ ? ତୁମ୍ଭର ଆଶା ସଫଳ ହେବ ନାହିଁ ।

ଜନୈକଋଷି—ପର ପାଇଁ ପ୍ରଭୋ ! ଜଗତ-ମହାର୍ଥ ଜୀବନ ଉତ୍ସର୍ଗ କରିବା ମୋର କ୍ଷୁଦ୍ର ବିବେଚନାରେ ଉଚିତ ନୁହେଁ । କେତେ ଦୁଃଖରେ—କେତେ କଷ୍ଟରେ ମହାପ୍ରାଣୀ ମାନବର ଜନ୍ମ । ସେ ଜୀବନକୁ ଆପଣ ଦେଖୁ ସ୍ୱେଚ୍ଛା କ୍ରମେ ବିସର୍ଜ୍ଜନ କରିବା କି ଉଚିତ ?

ଦଧୀ — ଅବଶ୍ୟ ଉଚିତ । ଯେବେ ସତୀ ଶଚୀଙ୍କର ଉଦ୍ଧାର ହେବ ମୋର ବିନାଶରେ ଅସଂଖ୍ୟ ଦେବଗଣ ରକ୍ଷା ପାଇବେ, ତେବେ ଏହାଠାରୁ ବଳି ମୋର ଅଧିକ ସୌଭାଗ୍ୟ ଆଉ ଅଛି ? ମୁଁ ନିଶ୍ଚେ ଏ ଜୀବନକୁ ବିସର୍ଜ୍ଜନ କରିବି । ମୋତେ ବାଧା ଦିଅନା ।

ଅଃ କୁମାର— (ସ୍ୱଗତଃ) ମୋର ସବୁ ଆଶା ଭରସା ଗଲା । ଆଶା କରିଥିଲି ମହର୍ଷିଙ୍କଠାରେ ଯୋଗବିଦ୍ୟା ଶିକ୍ଷା କରି ଅସାଧ୍ୟ ଯୋଗବଳରେ ଇନ୍ଦ୍ର ପଦ ଲାଭ କରିବି । ବୃଥା ସେ ଆଶା । (ଜନୈକଋଷିଙ୍କୁ) ଚାଲ ଏ ସ୍ଥାନକୁ ଯିବା । ଏହା ସ୍ୱଚକ୍ଷୁରେ ଦେଖିବାର ନୁହେ । (ଦୁହେଁ ପ୍ରସ୍ଥାନ)

ଶିଷ୍ୟବୃନ୍ଦ—ଗୁରୋ ! ଆମ୍ଭମାନଙ୍କୁ କି ଅକୂଳ ପାରାବାରରେ ଭସାଇ ଦେଇ ଯିବେ ? ଆଉ କି ଏ ଜନ୍ମରେ ଆପଣଙ୍କ ପ୍ରାୟ ଗୁରୁ ପାଇବୁଁ ? (କ୍ରନ୍ଦନ)

ଇନ୍ଦ୍ର — (ସ୍ୱଗତଃ) ଆହା ! ମହର୍ଷି କି ଦୟାଳୁ ! କି ପରୋପକାରୀ ! କି ନିଃସ୍ୱାର୍ଥପର !! ମୁଁ ତ ମୋ ଜୀବନରେ ଏପରି ପରୋପକାରୀ ମହାତ୍ମା ଦେଖି ନାହିଁ —କି ଦେଖିବି ନାହିଁ । ଶିଷ୍ୟମାନଙ୍କର କାତର କ୍ରନ୍ଦନ ଧ୍ୱନିରେ ଅରଣ୍ୟ ନିନାଦିତ ! ହାୟ ! ଏ ହତଭାଗ୍ୟକୁ ଆଜି ଏହା ଦେଖିବାକୁ ହେଲା ! ଶମ୍ଭୋ ! ଏହା ପୁଣି ମୋତେ ଦେଖିବାକୁ ହେଲା ?

ଦଧୀ —

ଶିଷ୍ୟଗଣ ! କର ନାହିଁ ବୃଥାରେ ବିଳାପ,
ଯେତେକାଳ ଜାଣ, ବିଧି ଲେଖିଥିଲା ଭାଗ୍ୟେ
ତିଷ୍ଠିବାକୁ ମର୍ତ୍ତ୍ୟଭବେ, ତିଷ୍ଠିଅଛି ମୁହିଁ;
ମନୋଗତ ଇଚ୍ଛା ମମ,—ପର ଉପକାରେ
ଉତ୍ସର୍ଗିବି ପ୍ରାଣ, କିନ୍ତୁ ଥିଲା ସେ ଅପୂର୍ଣ୍ଣ;
ଘଟିଛି ସୌଭାଗ୍ୟ ଯେବେ ଛାଡ଼ିବି କି ଆଉ ?
ଯିବ ଦିନେ ଜୀବ ଛାଡ଼ି ମୃତ୍ତିକାର ପିଣ୍ଡ
ଯାଇଥାନ୍ତା ଅକାରଣେ, ଦେବହିତ କାର୍ଯ୍ୟେ
ଯିବ ଆଜି ଅସ୍ଥି, ଅହୋ ! କି ସୌଭାଗ୍ୟ ମମ;
ଧନ୍ୟ ହେଲୁ ଦଧୀଚି ରେ, ଧନ୍ୟ ତୋର ଜନ୍ମ
ଏ ନଶ୍ୱର ଜଗତରେ, ଧନ୍ୟ ତୋ ତପସ୍ୟା ।

(ଇନ୍ଦ୍ରଙ୍କ) ନ ହେବ ବଷଣ୍ଣ ଇନ୍ଦ୍ର ! ମୋହର ହବାଣେ,
ସୁରଲୋକେ ବାର ପାଇଁ ଜନମ ମୁଁ ମର୍ତ୍ତ୍ୟେ;
କୃପା ବହ ଶିଷ୍ୟଗଣେ କରନ୍ତୁ ସାହାଯ୍ୟ
ଆଶୁ ଚିତା-ଅୟୋଜନେ; ସାଧ୍ୱୀ ଶଚୀ ଦେବୀ
ଭୋଗୁଛନ୍ତି ଦୈତ୍ୟପୁରେ କ ଭୀମ ଯନ୍ତ୍ରଣା !
ବେଗେ ଦୈତ୍ୟେ ବଧି ଇନ୍ଦ୍ର ! ଦୂର କର ତାହା;
ଅହା ! ସୁରଗଣ ବୃନ୍ଦ—ଉପଦ୍ରବେ ଅଜ
ଇତଃସ୍ତତ ! ସୁନାଶିର ! ସ୍ୱର୍ଗବ ଅଚିରେ
ଦେବଲୋକ ବାସି-ଦୁଃଖ ଶିବ କୃପାବଳେ ।
(ଶିଷ୍ୟଙ୍କୁ) କର ଚିତା-ଅୟୋଜନ, ନ କର ବିଳମ୍ବ,
ଶିଷ୍ୟଗଣ ! ଆଉ ମୋତେ ବିଳମ୍ବ ନ ସହେ,
ମରତରେ ଜନ୍ମିଲେ ତ ଘଟଇ ମରଣ,
ଜାଣ ନା କ ଶିଷ୍ୟବୃନ୍ଦ ! କଲ୍ଲ ହିତ କାର୍ଯ୍ୟ
ଘଟିଲେ ମରଣ ଧନ୍ୟ ହୁଏ ପ୍ରାଣୀ ଭବେ;
ସେ ସୁଯୋଗ ଘଟିଅଛି ବିଭୁ କୃପାବଳେ;
ଶିଷ୍ୟବର୍ଗ ! ଯେବେ କେବେ ଏ ସୁଯୋଗ ଘଟେ
ତବ ଭାଗ୍ୟେ, ନ ଛାଡବ କେବେଁ; ଧନ୍ୟ ଧନ୍ୟ
ବୋଲିବେ ତୁମ୍ଭଙ୍କୁ ନର—ମର୍ତ୍ତ୍ୟମଣ୍ଡଳରେ;
କର ଶୀଘ୍ର ଅୟୋଜନ; ଅସହ୍ୟ ବିଳମ୍ବ ।
( ଶିଷ୍ୟମାନଙ୍କର ଚିତାର ଅୟୋଜନ ଏବଂ କନ୍ଦନ )
ଇନ୍ଦ୍ର — ଇଚ୍ଛା କରେଁ ବର ଏକ ଦେବଇଁ ତୁମ୍ଭଙ୍କ,
ଗ୍ରହବିକି ଦେବ ! ତାହା ଦୟାର୍ଦ୍ର ହୃଦୟେ ?
ଦଧୀ — ଧନ୍ୟ ତବ ମନସ୍ୱିତା ! ବିନା ପ୍ରାର୍ଥନାରେ
ବରଦାନେ ସୁନାଶିର ! ବଳାଇଲ ଚିତ୍ତ ?
ଚିରଋଣୀ ତବ ପାଶେ ହେଲି ଶଚୀନାଥ !
ଦଅ ଅଭାଗାକୁ—ଇଚ୍ଛା ତବ ଯେଉଁ ବର ।
ଇନ୍ଦ୍ର— ( ସ୍ୱଗତଃ ) ଧନ୍ୟ ପ୍ରଶାନ୍ତ ଚେତା ଏହି ତପୋଧନ !
ମୋ ଅଭାଗା ପାଶେ ଋଣୀ ! ଧିକ୍; ଧିକ୍ ଇନ୍ଦ୍ର !
( ପ୍ରକାଶ୍ୟେ ) ତବ ବଂଶେ ଅବତର ଏହି ଧରା—ଧାମେ
ତପୋଧନ ଦ୍ୱୈପାୟନ ବ୍ୟାସଦେବ ନାମେ

କହବେ ପହ୍ୱାଏ ଏହି 'ଭାରତମଣ୍ଡଳ
ରଚଣ ଅସାଧ୍ୟ ଦେବ କଳପନା ବଳେ,
ସୁବିଶାଳ ମହାଗ୍ରନ୍ଥ ସେ ମହାଭାରତ
ବାଗ୍‌ଦେବୀ ପ୍ରସାଦେ ଯାହା ଅସମ୍ଭବ ଭବେ;
ଏହି ବର ମାତ୍ର ଆଜ ଦେଲ ତପୋଧନ !

ଦଧୀ — ତରଙ୍ଗିଣୀ ତବ ପାଶେ ଦେଲ ପ୍ରକାଶିର !
ଆଶାତୀତ ବର ମୋତେ ଦେଲ କୃପା ବହି;
ଏବେ; ଚିତାଗ୍ନିରେ ମୁହିଁ କରୁଚି ପ୍ରବେଶ,
କେଇ ଅସ୍ଥି, ବଜ୍ର ଗଢ଼ି, ବଧ ବୃତ୍ରାସୁରେ;
ହେଉ ସୁରପୁରୀ ରକ୍ଷା—ଶଚୀଙ୍କ ଉଦ୍ଧାର ।

{ ଉଚ୍ଚୈସ୍ୱରେ ବେଦ ପାଠ କରନ୍ତଃ ଚିତାଗ୍ନିରେ ପ୍ରବେଶ ଏବଂ ଶିଷ୍ୟମାନଙ୍କର କ୍ରନ୍ଦନ । }

ଇନ୍ଦ୍ର— ( ସ୍ୱଗତଃ ) କି ଭୀଷଣ ଦୃଶ୍ୟ ଆଜ ଦେଖିଲା ନୟନ,
ବିଦୀର୍ଣ୍ଣ ନ ହୋଇ ବକ୍ଷ ଅଛୁରେ କିପରି ?
ପାଷାଣେ ଗଠିତ କିବା ହୋଇଛୁ ମୋ ବକ୍ଷ !?
ପାଷାଣ ହେଲେ ବି ମଧ୍ୟ ଯାଆନ୍ତା ତରଳ
ଦେଖି ଏ ଭୀଷଣ ଦୃଶ୍ୟ ! ମୋ ଅଭାଗା ପାଇଁ
ଆହା ! ଋଷି ବିସର୍ଜିଲେ ପ୍ରାଣ ଅକାତରେ ! !
ସଂସାରର ଇତିବୃତ୍ତେ ଅଟେ ଯା ଦୁର୍ଲ୍ଲଭ ! ! !

( ପ୍ରକାଶେ ) ନାହିଁ ପ୍ରୟୋଜନ ମମ ଦେବ-ଧାମ-ରକ୍ଷା,
ନାହିଁ ପ୍ରୟୋଜନ ମମ ଇନ୍ଦ୍ରତ୍ୱ ଏ ଭବେ,
ନାହିଁ ପ୍ରୟୋଜନ ଆଉ ଶଚୀର ଉଦ୍ଧାର,
ଚିରନ୍ତନ ବନ୍ଦିନୀ ସେ ଥାଉ ଦୈତ୍ୟପୁରେ ।

( କ୍ରନ୍ଦନ ପୂର୍ବକ ) ନିଜ ସ୍ୱାର୍ଥ ପାଇଁ ଆହା ! କଲି କି କୁକାର୍ଯ୍ୟ !
ଜଗତର ଇତିହାସେ ହେଲି ମୁଁ ଘୃଣିତ,
ଅତି ନୀଚ, ଜଘନ୍ୟ ମୁଁ,—ଅତି ମହାପାପୀ;
ନାହିଁ କିଛୁ ପ୍ରୟୋଜନ, ଏହି ଚିତାନଳେ
ପ୍ରବେଶି ମୁଁ ବିସୋରିବି ଏ ମନୋବେଦନା ।
ଶିବ ! ଶମ୍ଭୋ ! ହେଲା ନାହିଁ ଆଦେଶ ପାଳନ
ତବ, ହେଲା ନାହିଁ ସତୀ ଶଚୀର ଉଦ୍ଧାର,—

ହେଲା ନାହିଁ ସ୍ୱର୍ଗପୁରୀ ସୁ-ରକ୍ଷିତ ପ୍ରଭୋ !
ଅସହ୍ୟ ଏ ଶ୍ରମ ଦୃଶ୍ୟ ଇନ୍ଦ୍ରର ସାକ୍ଷାତେ;
ଯାଅ ଅମ୍ବା, ପ୍ରବେଶ କର ଏହି ଚିତାଗ୍ନିରେ ।

( ଚିତାଗ୍ନିକୁ ପ୍ରବେଶୋଦ୍ୟତକାଳୀନ ଏକଦଗରୁ ମହାଦେବ ଓ ଅନ୍ୟ ଦଗରୁ ନନ୍ଦଙ୍କର ଆବର୍ଭାବ ଏବଂ ଇନ୍ଦ୍ରଙ୍କ ହସ୍ତଧାରଣ )

ମହା — କପାଇଁ ଅଧୀର ତୁମ୍ଭେ ଦଧୀଚି ମରଣେ ?
ଯେଉଁପାଇଁ ସଂସାରେ ସେ ହୋଇଥିଲେ ଜନ୍ମ,
ଲୀଳା ମୋର ଭବେ ଏହା ଜାଣ ସୁନାଶିର !
ଜାଣ ନା କି ମମ ଲୀଳା ଜଗତ ମଣ୍ଡଳେ ?
ଜାଣି ଶୁଣି ହେଉଅଛ ଏପରି ଅଧୀର ?

ଇନ୍ଦ୍ର — ସହ୍ୟ ହେଲା ନାହିଁ ଦେବ ! ସେ ହେତୁ ଅଗ୍ରଗା
ଲଭି ଅଧୈର୍ଯ୍ୟ, ବିକଳୀ ଏହି ଚିତାଗ୍ନିରେ
ନିର୍ବାପିତ ହେବାପାଇଁ ବଳାଇଲି ଚିତ୍ତ;
ଜାଣିଲି ମୁଁ ଭବଲୀଳା ଲୀଳାମୟ ଶିବ !
ପାଳିବ ଆଦେଶ ଏବେ, କ୍ଷମ ହତଭାଗ୍ୟେ ।

ମହା — ଆମ୍ଭେ ଯାଉଛୁ ।—ତୁମ୍ଭେ ଅସ୍ଥି ନେଇ ବଜ୍ର ଗଠନ
କରିବାପାଇଁ ବିଶ୍ୱକର୍ମାଙ୍କୁ ପ୍ରଦାନକର ।

( ନନ୍ଦୀସହ ପ୍ରସ୍ଥାନ । )

ଇନ୍ଦ୍ର—(ଶିଷ୍ୟମାନଙ୍କ ପ୍ରତି । ) ହେ ତାପସବୃନ୍ଦ ! କ୍ଷମ ହତଭାଗ୍ୟ ଇନ୍ଦ୍ରେ
ଦେବ ନାହିଁ ଅଭିଶାପ, ଫଣୀଧାରୀ ଦେବ,
ଶିବାଦେଶେ ଅସିଥିଲି ଏ ଆଶ୍ରମଦେଶେ;
ଦିଅନ୍ତୁ ମହର୍ଷି-ଅସ୍ଥି, ଦିଅନ୍ତୁ ବିଦାୟ ।

( ଶିଷ୍ୟମାନଙ୍କର ଅଗ୍ନି ନିର୍ବାପନ ଓ ଇନ୍ଦ୍ରଙ୍କୁ ଅସ୍ଥି ପ୍ରଦାନ ଏବଂ ଅସ୍ଥି ନେଇ ଇନ୍ଦ୍ରଙ୍କର ପ୍ରସ୍ଥାନ । )

ପଟକ୍ଷେପଣ ।

—୦✱✱✱୦—

## ପ୍ରଥମ ଅଭିନୟ—ଚତୁର୍ଥ ଦୃଶ୍ୟ ।

ଚତୁର୍ଥଦୃଶ୍ୟ—କକ୍ଷ ।

( କେତୋଟି ସିଂହାସନ ସୁ-ସଜ୍ଜିତ ହୋଇ ରକ୍ଷିତ ଓ ପଲ୍ୟଙ୍କୋପରି ବିଶ୍ୱକର୍ମ୍ମା ଆସୀନ । )

ବିଶ୍ୱ—( ସ୍ୱଗତଃ ) କେତେ ଶ୍ରମରେ—କେତେ ଦୁଃଖରେ ଅମରାବତୀ ଗଠନ କରିଥିଲି । ପ୍ରତାପୀ ବୃତ୍ର ସେ ସମସ୍ତ ତ ଛିନ୍ନବିଚ୍ଛିନ୍ନ କରିଥିବ ! କିବା ତାହାର ପ୍ରୀତିକର ସ୍ଥାନଗୁଡ଼ିକ ରଖିଥିବ ! ରଖୁ ବା ନ ରଖୁ ତାହାର ଉପଭୋଗ ପାଇଁ ମୁଁ କଅଣ ଅମରାବତୀ ଗଠନ କରିଥିଲି ? ତାହାର ପାଇଁ କଅଣ ହେମ-ହୀରକ ମଣି-ମାଣିକ୍ୟ ଆଦି ଅଷ୍ଟଧାତୁ ବିଖଚିତ ସିଂହାସନମାନ ଗଠନ କରିଥିଲି ? ଧନ୍ୟ ବୃତ୍ର ! ତୋହ ଭାଗ୍ୟରେ ଯାହା ଘଟିବାର ଅସମ୍ଭବ ମହାଦେବଙ୍କ କୃପାରୁ ସେ ସବୁ ଉପଭୋଗ କଲୁ ।

( ଜନୈକ ଭୃତ୍ୟର ପ୍ରବେଶ )

ଭୃତ୍ୟ — ଆଜ୍ଞା, ଦେବରାଜ ଇନ୍ଦ୍ର ଆସୁଁଛନ୍ତି ।

( ଇନ୍ଦ୍ରଙ୍କର ପ୍ରବେଶ )

ବିଶ୍ୱ — (ଦଣ୍ଡାୟମାନ ହୋଇ ଇନ୍ଦ୍ରଙ୍କୁ ଅଭିବାଦନ ଓ ସିଂହାସନ ପ୍ରଦାନ । )

ବସନ୍ତୁ ସୁରେଶ ! ଏହି ରତ୍ନସିଂହାସନେ,<br>
ଗଢ଼ିଥିଲି ତବପାଇଁ, ଅନ୍ୱେଷିଣ କେତେ<br>
ଭେଟି ନ ଥିଲି ଆପଣେ, ଏବେ ଗ୍ରହି ଦେବ ।<br>
କୃତାର୍ଥ କରନ୍ତୁ ମୋତେ; ବହୁ ଶ୍ରମ ମମ<br>
ସାର୍ଥକ ହେଉ ବାସବ ! କ ଉଦ୍ଦେଶ୍ୟେ ଆଜ<br>
ଆସିଲେ ମୋ ପାଶେ, ଆଜ୍ଞା କଲେ ଶିରେ ଗ୍ରହି<br>
ପାଳିବ ନିଶ୍ଚୟ; ପୂତ ହେଲା ଦେବ ! ଆଜ<br>
ତବ ପରଶରେ ଏହି ଅକିଞ୍ଚନର ବାସ ।

ଇନ୍ଦ୍ର — ବୃତ୍ରର ନିଧନ ପାଇ ଥିଲି ବନ୍ଧୁବାଙ୍କୁ<br>
ଚକ୍ରାନ୍ତର ଶିଳ୍ପୀରାଜ ! ଥିଲି ନିରୁପାୟ;<br>
ଜଣାଇଲି ଉମାପତି ପାଶେ ମୋ ଉଦ୍ଦେଶ୍ୟ<br>
ଦୟାବହ ଆଦେଶିଲେ ଯଦି ଆଣିପାର,<br>
ମହର୍ଷି-ଦଧୀଚି-ଅସ୍ଥି, କଲେ ତାରୁ ବଜ୍ର;<br>
ହତହେବ ଦର୍ପି ଜୟୀ ସେ ଦୈତ୍ୟେନ୍ଦ୍ର ବୃତ୍ର;<br>
ଆଣିଛୁ ସେ ଅସ୍ଥି, କାଅ, ଗଢ଼ ବଜ୍ର ଶୀଘ୍ର,

ହେଉ ବୃତ୍ରର  ନିଧନ, ରକ୍ଷୁ ଭବେ କୀର୍ତ୍ତି ।

ବାଣ— ଅଦେଖିଲେ ଯାହା ଦେବ ! ପାଠକ-ନଷ୍ଟସ୍ୟ,
କୌତୂହଳ ଜନ୍ମଅଛୁ ହୃଦୟେ ମୋହର,
କହନ୍ତୁ ତପଣ ଦେବ ! ଆଣିଲ ସେ ଅସ୍ଥି ।

ଇନ୍ଦ୍ର— ପ୍ରବେଶିଲି ତପୋଧନ—ତପୋବନ ମଧ୍ୟେ,
ଦେଖିଲି ଅଛନ୍ତି ତଥା ବହୁ ଋଷି ଶିଷ୍ୟ,
ତପୋଭଙ୍ଗ ଅନ୍ତେ ଋଷି ପୁଚ୍ଛିଲେ ସଦୟେ
"କିପାଇଁ ବାସବ ! ତବ  ଶୁଭ-ଆଗମନ
ମମ ଆଶ୍ରମ ପ୍ରଦେଶେ ?" କିଛି ନ କହିଲି,
ନ ଫୁଟିଲା ବାଣୀ ମୁଖୁଁ; କହନ୍ତୁ, ତପଣ
ଶିଳ୍ପିରାଜ ! ସେ କଷ୍ଟର  ନିରଦୟ ବାଣୀ ?
ପ୍ରକାଶନ୍ତି କେମନ୍ତେ ମୁଁ ? ତହୁଁ ଧ୍ୟାନବଳେ
ଜାଣି ଅଭିପ୍ରାୟ ମମ ହେଲେ ଅତି ତୁଷ୍ଟ;
ବୋଇଲେ " ବାସବ ! ଧନ୍ୟ ଧନ୍ୟ ମୋ  ଜୀବନ
ପରହିତେ ଅର୍ପିବି ମୁଁ ଆଜ  ଯେବେ  ପ୍ରାଣ,
ମୋହଠାରୁ ବଳି କିଏ ଅଛି ଭାଗ୍ୟବାନ ?"
ଏହା କହି ଯୋଗିବର ପ୍ରବେଶି  ତଗାରେ
ଆହା ବିସର୍ଜିଲେ ପ୍ରାଣ; ସେ  ଦାରୁଣ ଦୃଶ୍ୟ
ହେବାରୁ ଅସହ୍ୟ ଅତି, ଇଚ୍ଛିଲି ଅନଳେ
ପଶି ହେବି ମୁଁ  ଦଗଧ,  ଏମନ୍ତ  ସମୟେ
ଉରଗ ଭୂଷଣ ଯାଇଁ ନିବାରଲେ ମୋତେ,
ବୋଇଲେ "ବାସବ ! ଏହା ଲୀଳା ମୋ ଜଗତେ,
ଦେବକୁଳ ରକ୍ଷାପାଇଁ  ଦଧୀଚିଙ୍କ  ଜନ୍ମ
କିପାଇଁ ଅସ୍ଥିର ତୁମ୍ଭେ ହେଉଛ ବୃଥାରେ ?
ଯାଅ ନେଇ ଅସ୍ଥି ଭିଗ ଅରଣ୍ୟ ପ୍ରଦେଶୁ,
ହଥ ନେଇ ଶିଳ୍ପିରାଜ ବଜ୍ରନିର୍ମାଣ କରେ !"
ଅସିଅଛି ତବ ପାଶେ ତେଣୁ ଶିଳ୍ପିରାଜ !
ନିଅ ଅସ୍ଥି, ଗଢ଼ ବଜ୍ର ରକ୍ଷଃଧ୍ୱଂସ ପାଇଁ । ( ଅସ୍ଥିପ୍ରଦାନ । )

ବାଣ— ( ବଜ୍ର ଗଠନ କରୁ୨ ) ଧନ୍ୟ ମେ ମହର୍ଷି, ଧନ୍ୟ ତଧାଗାର
ଲୀଳା, ଆଶ୍ଚର୍ଯ୍ୟ ମଣଇ ଦେବ ! ଶୁଣି ଏ ଭାରଗ, ପରଉପକାର ପାଇଁ

ବିସର୍ଜିଲେ ପ୍ରାଣ ତପୋଧନ ? ବିନ୍ଦୁମାତ୍ର ନ କଲେ ଆପତ୍ତି

ଇନ୍ଦ୍ର— କଲେ ନାହିଁ ଆପତ୍ତି ସେ ଅଣୁମାତ୍ର, ଅହୋ !
ବରଂ ହୋଇଲେ ଆନନ୍ଦିତ, ପ୍ରକାଶି ନାହିଁ ମୁଁ,
ଜାଣି ତପୋବଳେ ମୋତେ କହିଲେ ଆନନ୍ଦେ,
"ଧନ୍ୟ ହେଲ ଦେବରାଜ ! ଧନ୍ୟ ମୋ ତପସ୍ୟା,
ସୁରଲୋକୋଦ୍ଧାର ପାଇଁ ବିସର୍ଜିବି ପ୍ରାଣ,
ଏହାଠାରୁ ବଳି ଆଉ କି ଅଛି ସୁବୁଦ୍ଧି ?"

ବିଶ୍ୱ— ଏପରି ପରୋପକାରୀ ଅଛନ୍ତି ଜଗତେ ?

ଇନ୍ଦ୍ର— ( ସ୍ୱଗତଃ ) ଦୁଷ୍ଟ ବୃତ୍ର ! ନରକୀ ମୂଢ଼ ! ହେବୁ ରେ ନିଧନ,
ବଂଶ ଧ୍ୱଂସ ହେବ ତୋର ଏକଦିନେ ନିଶ୍ଚୟ;
ଅଳ୍ପକାଳ ଅଛି ତୋର ଆଉ ପ୍ରାଣବାୟୁ ।

ବିଶ୍ୱ — ନିଅ ବଜ୍ର ଶଚୀନାଥ ! ଗଢ଼ିଲି ଯତନେ,
ହତ ହେବ ଏହି ବଜ୍ରେ ସଂଘର୍ଷେ ସେ ବୃତ୍ର । ( ବଜ୍ର ପ୍ରଦାନ )

ଇନ୍ଦ୍ର— ପ୍ରୟୋଗ ପ୍ରଣାଳୀ କହ ଶିଳ୍ପିଚୂଡ଼ାମଣି !

ବିଶ୍ୱ— ନିକ୍ଷେପିବ ଦେବରାଜ ! ଉଦ୍ଦେଶ୍ୟ ଯାହାକୁ
ନାହିଁ ତାର ପରିତ୍ରାଣ, ହେବ ସେ ନିଧନ ।

ଇନ୍ଦ୍ର— ପରୀକ୍ଷା କରିଣ ଥରେ ଦେଖନ୍ତୁ ମାହାତ୍ମ୍ୟ ?

ବିଶ୍ୱ— ନାହିଁ ପ୍ରୟୋଜନ ଦେବ ! ପରୀକ୍ଷା ଏହାର,
ଜଳେ ନିକ୍ଷେପ ଏଠାରେ, ଭୀଷଣ ଗର୍ଜନେ
ଦହିବ ସେ ବଜ୍ର ସବୁ; ଭସ୍ମସାତ ହେବ !
ଗଢ଼ିଛି ଏ ପୁରୀ, ହେବ ସକଳ ବିଧ୍ୱସ୍ତ;
ହେବ ଧ୍ୱସ୍ତ ବିଭବ ମୁହୂର୍ତ୍ତକ ମଧ୍ୟେ,
ପ୍ରୟୋଜନ ନାହିଁ ଦେବ ! ନିକ୍ଷେପିବ ଏହା,
କୃପା କରି ଶଚୀପତି ! ଘେନ ମୋ ବିନତି ।

ଇନ୍ଦ୍ର— ତେବେ ନାହିଁ ପ୍ରୟୋଜନ ପରୀକ୍ଷା, ଶିଳ୍ପୀନ୍ଦ୍ର !
ଏପରି ପ୍ରତାପୀ ବଜ୍ର ? ଧନ୍ୟ ସେ ମହର୍ଷି,
ତେବେ ଯାଏଁ ଶିଳ୍ପିରାଜ ! ହେଉଛି ବିଦାୟ ।
( ଇନ୍ଦ୍ରଙ୍କର ପ୍ରସ୍ଥାନ ଓ ପ୍ରସ୍ଥାନ କାଳୀନ ବିଶ୍ୱକର୍ମାଙ୍କର ଇନ୍ଦ୍ରଙ୍କ ଅଭିବାଦନ )

[illegible]— (ସ୍ୱଗତ) କି ଆଶ୍ଚର୍ଯ୍ୟ ଲୀଳା ଅହୋ ! ଅଦ୍ଭୁତ ବିଶ୍ୱର !
ଏ ବିଶ୍ୱଲୋକ ରକ୍ଷାପାଇଁ କି ବିଚିତ୍ର ସୃଷ୍ଟି
କରିଛନ୍ତି ସେ ବିଧି ? ସେହି ଜଗତ୍ର ରହସ୍ୟ
କେ ବୁଝିବ ତିନିଲୋକେ ? ଅଛି କା'ର କ୍ଷମତା ?
ଅହୋ ! ପର ଉପକାରବ୍ରତେ ହୋଇ ବ୍ରତୀ
ବିସର୍ଜିଲେ ତପୋଧନ ଅକାତରେ ପ୍ରାଣ ?
ଯାହା କଳ୍ପନା ଅତୀତ ଶୁଣିଲି ତା ଆଜ !
ଧନ୍ୟ ସେହି ଏ ତିନିଲୋକେ ପର ହିତ ପାଇଁ
ଯେହୁ ବିସର୍ଜଇ ପ୍ରାଣ ସଦମ୍ଭେ ନିର୍ଭୟେ । (ପ୍ରସ୍ଥାନ)

(ଅଦୃଷ୍ଟ କୁମାରୀମାନଙ୍କ ପ୍ରବେଶ, ନୃତ୍ୟ ଓ ଗୀତ ।)

ମୂଲ୍‌ତାନ—ଆଡ଼ାଠେକା ।

ବିଚିତ୍ର ବିଧାନ ଅଟେ ଭବେ ଅହୋ ! ବିଧାତାର
ମନେ କଲେ ତାହା, ମନ ମୁଗ୍ଧ ହୁଏ ବାରମ୍ବାର । ପଦ ।
ରକ୍ଷଃ ବୃତ୍ର ଶିବବରେ ଅଜେୟ ହୋଇ ଭବରେ
କରେ ତିନିଲୋକେ ଗର୍ଜ୍ଜନ କି ଭୀଷଣ ହୁହୁଙ୍କାର । ୧ ।
ସତୀ ଶଚୀଙ୍କୁ ବନ୍ଦୀକରି ଦେବଙ୍କୁ ସ୍ୱର୍ଗୁଁ ତାଡ଼ନ
କରି ବୃତ୍ରାସୁର କଲା ଦେବପୁରୀ ଛାରଖାର । ୨ ।
ସୁରଲୋକ-ଉଦ୍ଧାରଣେ ରାକ୍ଷସକୁଳ ଦଳନେ
ତେଜିଲେ ପ୍ରାଣ ଦଧୀଚି—ଋଷି ଦୟା-ପାରାବାର । ୩ ।
ହେଲେ ସେ ଦୈତ୍ୟ ନିଧନ ଲଭିବେ ଶଚୀ ମୋଚନ
ଲଭିବେ ଇନ୍ଦ୍ର ଇନ୍ଦ୍ରତ୍ୱ ସୁରପୁରେ ପୁନର୍ବାର । ୪ ।

ଯବନିକା ପତନ ।

—୦*୦—

# ଦ୍ୱିତୀୟ ଅଭିନୟ ପ୍ରଥମ ଦୃଶ୍ୟ ।

ପ୍ରଥମଦୃଶ୍ୟ—ଉଦ୍ୟାନ ।

( ବୃତ୍ର ଓ ଐନ୍ଦ୍ରିଲା ଉଦ୍ୟାନରେ ବିଚରଣ । )

ବୃତ୍ର— ( ଚତୁର୍ଦ୍ଦିଗ ନିରୀକ୍ଷଣପୂର୍ବକ ) ହାୟ ! କି କୁ-କ୍ଷଣରେ ରୁଦ୍ରପୀଡ଼ ଶଚୀଦେବୀଙ୍କୁ ନୈମିଷାରଣ୍ୟରୁ ବନ୍ଦିନୀ କରି ଆଣିଥିଲା ! ସେହି-ହେତୁ ସିନା ଆଜି ଶିବଙ୍କର ଏପରି କୋପାନଳ ! ଶିବ କୋପା-ନଳରେ ଦୈତ୍ୟପୁରୀ ଆଜି ନିବର୍ଯ୍ୟ ଦିଶୁଛି । ଏ ଉଦ୍ୟାନର ବୃକ୍ଷ, ଲତା, ପୁଷ୍ପ ସକଳ କିମ୍ପା ମଳିନ ଦେଖାଯାଉଛି ! କାହାର ମନରେ ସୁଖ ନାହିଁ । କେବଳ ଚତୁର୍ଦ୍ଦିଗରେ ବିଷାଦ-କାଳିମା ଦେଖାଯାଉଛି । ( ପ୍ରକାଶ୍ୟେ ) ପ୍ରିୟେ ! ଶୀଘ୍ର ଯାଇ ଶଚୀଦେବୀଙ୍କୁ କାରାମୁକ୍ତ କର—ନଚେତ୍ ରକ୍ଷା ନାହିଁ ।

ଐନ୍ଦ୍ରିଲା— କି ? ଶଚୀର କାରାମୁକ୍ତି ? କାହିଁକି ?

ବୃତ୍ର— ଶଚୀଙ୍କୁ କାରାରୁ ମୁକ୍ତ ନ କଲେ ରକ୍ଷଃକୁଳ ନିର୍ମ୍ମୂଳ ହେବ । ଦେଖୁନା, ଶିବ କୋପାନଳରେ ଦୈତ୍ୟଧାମର କି ଦୁର୍ଦ୍ଦଶା ଘଟିଲାଣି ।

ଐନ୍ଦ୍ରିଲା— ( ଚତୁର୍ଦ୍ଦିଗ ନିରୀକ୍ଷଣପୂର୍ବକ ) ପ୍ରିୟବର ! ଏ ତ ପ୍ରକୃତିର ନିୟମ । ପ୍ରକୃତି ରାଜ୍ୟରେ ଏହିପରି ଭଲ, ମନ୍ଦ; ସୁନ୍ଦର, କୁତ୍ସିତ, ସୁଖ, ଦୁଃଖ ଆଦି ଘଟିଥାଏ । ଶିବ କୋପାନଳ ବୋଲି ତ ମୋତେ ଜଣାଯାଉ ନାହିଁ ।

ବୃତ୍ର— ନା ଏ ପ୍ରକୃତିର ନିୟମ ନୁହେ । ପ୍ରକୃତିର ନିୟମ ହେଲେ ମୋତେ ଏତେଦୂର ବ୍ୟାକୁଳ ହେବାକୁ ପଡ଼ନ୍ତା ନାହିଁ । ଦେବତା-ମାନଙ୍କର ମାୟା ! ନା,—ତା ମଧ୍ୟ ନୁହେ । ଏ ନିଶ୍ଚୟ ଶିବ କୋପାନଳ ।

ଐ— ଶଚୀର କାରାମୁକ୍ତି ! ଓଃ ! ହୃଦୟ ଦଗ୍ଧ ହୋଇଯାଉଛି । ଯେଉଁ ସ୍ୱାମୀ ଦାସୀ ପ୍ରାୟ ମୋର ସେବା କରିବାକୁ ଶଚୀକୁ ନିୟୋଜିତା କରି ଦେଇଥିଲେ ତାଙ୍କର ପୁଣି ଏପରି ଆଦେଶ ! ନିଶ୍ଚୟ ଏଥିରେ କିଛି ଗୂଢ଼ ଅଭିସନ୍ଧି ଅଛି । ( ପ୍ରକାଶ୍ୟେ ) ପ୍ରିୟତମ ! ତେବେ କି ଶଚୀକୁ ଛାଡ଼ି ଦେବାକୁ ହେବ ?

ବୃତ୍ର— ହିଁ ପ୍ରିୟେ ! ଶୀଘ୍ର ଦାସୀକୁ ଡାକ ।

ଐ— ଦାସି ! ଦାସି ! ଦାସି !

( ଦାସୀର ପ୍ରବେଶ । ).

ଦାସୀ— ମଣିମା !

ଐ— ଶୀଘ୍ର ସେ ଶଚୀକୁ ଘେନି ଆସିବୁତ ।—

ଦାସୀ— ଯେ ଆଜ୍ଞା ମଣିମା ! ( ପ୍ରସ୍ଥାନ । )

ଐ— ଦେବଗଣ କହିବେ ଦୈତ୍ୟରାଜ ଭୀତ ହୋଇ ଶଚୀଦେବୀଙ୍କୁ ଛାଡ଼ି-
ଦେଲା ଏ ଅପମାନ ସହ୍ୟ ହେବତ ? ବନ୍ଧନରୁ ମୁକ୍ତି ଦିଅନ୍ତୁ
କିନ୍ତୁ ଛାଡ଼ି ଦିଅନ୍ତୁ ନାହିଁ ।

ବୃତ୍ର— ନା ପ୍ରିୟେ ! ଛାଡ଼ିଦେବାକୁ ହେବ । ତା ନ ହେଲେ ଦୈତ୍ୟ-
ପୁରୀରେ ଘୋର ବିଭ୍ରାଟ ଘଟିବ ।

( ଦାସୀସହ ଶଚୀଦେବୀଙ୍କ ପ୍ରବେଶ )

ଐ— ( ଶଚୀଙ୍କୁ ଅନାଇ ) ତୁମ୍ଭଙ୍କୁ ବନ୍ଧନରୁ ମୁକ୍ତି ଦିଆଗଲା ।

ବୃତ୍ର— ସତି ! ତୁମ୍ଭଙ୍କୁ ବନ୍ଧନରୁ ମୁକ୍ତ କରାଗଲା ।
ଏବେ ତୁମ୍ଭେ ତୁମ୍ଭର ପତିଙ୍କ ପାଖକୁ ଯାଇପାର ।

ଶଚୀ— ନା—ଦୈତ୍ୟରାଜ ! ମୋର ସ୍ୱାମୀ ମୋତେ ମୁକ୍ତ ନ କଲେ
ଯିବି ନାହିଁ । ଅନ୍ୟ କାହା ମୁକ୍ତ ହେବାକୁ ଚାହେଁ ନାହିଁ ।

ଐ (ଦର୍ପେ) ଏବେ ହେଲା —ମୁଁ କହୁଥିଲି ପରା ! ଦେଖିଲେତ କେତେ
ଗର୍ବ ? ତାହାର ସ୍ୱାମୀ ଆସି ଏଠାରୁ ମୁକ୍ତ କରି ନେବ ।
ହଁ ଆସ୍ପର୍ଦ୍ଧା ! ଶଠ ! ଧନ୍ୟ ତୋହର ସାହସ !

ବୃତ୍ର— ଏ ଯୁଗରେ ଯାହାର ବଳ ଅଧିକ ସେ ପର ମନ୍ଦ ବୁଝିବ ଏ ତ
ଯୁଗ ଲକ୍ଷଣ । ହେଉ—ଯାଅ ବା ନ ଯାଅ ଆମ୍ଭେ ତୁମ୍ଭଙ୍କ ମୁକ୍ତି
ପ୍ରଦାନ କଲୁଁ । ତୁମ୍ଭର ସ୍ୱାମିଙ୍କର ସାଧ୍ୟ ନାହିଁ ସେ ଏଠାକୁ
ଆସି ତୁମ୍ଭଙ୍କୁ ନେବେ । ତୁମ୍ଭେ ଭାବୁଛ ଇନ୍ଦ୍ର ଆସି ମୋତେ
ଯୁଦ୍ଧରେ ପରାସ୍ତ କରି ତୁମ୍ଭଙ୍କ ଆନନ୍ଦରେ ନେଇ ଯିବ ।
ଏ ତୁମ୍ଭର ଦୁରାଶା । ଶିବଦତ୍ତ ବରରେ ମୁଁ ଜଗତରେ
ଅଜେୟ — ଅମର । କି ? କି ଆପତ୍ତି ?

ଶଚୀ— କିଛି ଆପତ୍ତି ନାହିଁ । ଯେପରି ଅଛି ସେହିପରି ଥିବ ।

ଐ— ଭଲ ହେଲା । ଦାସି ! ଏହାକୁ ଯଥାସ୍ଥାନେ ନେଇ ଯା ।

ଦାସୀ— ଯେ ଆଜ୍ଞା ମଣିମା ! ( ପ୍ରସ୍ଥାନ )

ଐ— ଦେଖିଲେତ—ତାହାର କପଟ ଗର୍ବ !

ବୃତ୍ର— ସେ ଜୀବନ୍ତ, ଇନ୍ଦ୍ର ମୋତେ ଯୁଦ୍ଧରେ ପରାସ୍ତ କରି ତାଙ୍କୁ ଉଦ୍ଧାର କରି ନେବ । ଈଃ ଦୁରାଶା ! ଏହିପରି ଦୁରାଶାରେ ସିନା ଲୋକେ ନଷ୍ଟ ହୁଅନ୍ତି ! ପ୍ରେୟେ ! ବର୍ତ୍ତମାନ ମୁଁ ରାଜସଭାକୁ ଯାଉଛି । ଯୁଦ୍ଧ ବିଷୟରେ ପରାମର୍ଶ କରିବାକୁ ଅଛି । (ପ୍ରସ୍ଥାନ)

ପଟକ୍ଷେପଣ

—○—

ଦ୍ୱିତୀୟ ଅଭିନୟ—ଦ୍ୱିତୀୟ ଦୃଶ୍ୟ ।

ଦ୍ୱିତୀୟ ଦୃଶ୍ୟ—ରାଜସଭା ।

( ଗୋଟିଏ ସିଂହାସନ ସୁସଜ୍ଜିତ ହୋଇ ରକ୍ଷିତ, ସିଂହାସନର ପଶ୍ଚାଦ୍ଭାଗରେ ଭୃତ୍ୟଗଣ ଛତ୍ର ଚାମର ଧରି ଦଣ୍ଡାୟମାନ, ସିଂହାସନ ପାଖରେ ମନ୍ତ୍ରୀ, ବହୁଜନ, ସଭାସଦ୍‌ବର୍ଗ, କାଳଭଦ୍ର ଓ ସୁନ୍ଦନାସୁର ଆସୀନ ଏବଂ କିୟତ୍-କାଳପରେ ବୃତ୍ରର ପ୍ରବେଶ ଓ ସିଂହାସନରେ ଉପବେଶନ । )

ବୃତ୍ର— ମନ୍ତ୍ରିବର ! ସୁରଗଣ ଉନ୍ମତ୍ତ କି ଏବେ ?—
ଉନ୍ମତ୍ତ କି ଅଛି ଇନ୍ଦ୍ର ? ମନେ ମୁଁ ବିସ୍ମୟ,—
ଶୁଣୁଛି ମୁଁ, ସେ ଅବୋଧେ ପୁନଃ ରଣ ଆଶେ
ଅଛନ୍ତି ଉଦ୍ୟୁକ୍ତ; ଏକି ନୁହଇ ଦୁରାଶା ?

ମନ୍ତ୍ରୀ— ଦୁରାଶା ଏ ରକ୍ଷଃନାଥ, ନୋହିଲେ କି ସୁରେ
ପୁନଃ ସଂଗ୍ରାମ ଲାଳସେ ବଳାନ୍ତେ ପିପାସା ?
ନିଜର ପତନ ହେତୁ ହେଲେ ନିଜେ ନିଜେ,
ହେବେ, ମଧ୍ୟ ପୁନର୍ବାର; କିନ୍ତୁ ମାହସେ ଦେବ !
ମାତିଛନ୍ତି ସୁରଗଣେ,—ମାତିଅଛି ଇନ୍ଦ୍ର
ପୁନଃ ରଣ—ଆୟୋଜନେ ? ଏ ଅତି ଆଶ୍ଚର୍ଯ୍ୟ !

କାଳଭଦ୍ର—ଅତି ଚମତ୍କାରପଣ ଅଟେ ବାସବର
ବୃଥାରେ ମାତିଛି ରଣେ କିପାଇଁ କେ ଜାଣି ?

ସୁନ୍ଦନାସୁର—ମାତିଛି ବାସବ ରଣେ ଜୟ ଆଶେ ପୁଣ ?
ଅତି ମୂଢ଼ ଆଖଣ୍ଡଳ ପ୍ରଭୁ ଦାନବେନ୍ଦ୍ର !

ବହୁ— (ସ୍ୱଗତଃ) ଦେବତାମାନେ ଏଣେ ତେଣେ ବୁଲୁଥିବେ, ଆଜି ଏ ଗୁଣ୍ଡାଙ୍କ ଅମରାଙ୍ଗରେ ନାଚିବେ—କୁଦିବେ; ବୃତ୍ରଟା ଏଠାରେ ରାଜସିଂହାସନରେ ବସିଥିବ ଆଉ ଇନ୍ଦ୍ର ଅରଣ୍ୟରେ ବୁଲୁଥିବେ । ପୁଣି ଦେଖ ସତୀଶିରୋମଣି ଶଚୀଦେବୀଙ୍କୁ, କାରାଗାରରେ ବନ୍ଧନ କରି ରଖିଛନ୍ତି ! ଇନ୍ଦ୍ର ମୂର୍ଖ—ଏ ଗୁଣ୍ଡାନ

ପଣ୍ଡିତ । ଟେକାଟେକି କରି ନ କହିଲେ ଚଳିବେ କପରି ?, କଥାରେ କହନ୍ତି ପଞ୍ଚ ଅବୁଝା ରଜାଙ୍କୁ ପୁଅଣରଣ୍ଡା ମନ୍ତ୍ରୀ— ଏ ଠିକ୍ ସେହିପରି । ରହ— ରହ—ଅସ୍ତ୍ର ଧର—ପାଇବ ଯେ —ଅଚିରାତ୍ ପାଇବ । ( ପ୍ରକାଶ୍ୟେ ) ମହାତ୍ମନ ! ଶଚୀଙ୍କୁ ନୈମିଷାରଣ୍ୟରୁ ବନ୍ଧନ କରି ଆଣିଲେ—ଏ ଅମରାବତୀରେ ଦାନବର ମହାରଜା ହେଲେ ଆଉ ଏ ବ୍ରାହ୍ମଣଟାକୁ କିଛି ମିଳିଲା ନାହିଁ ? ସତ୍ୟଦିନେ ପରା ମୁଁ ଦାନବଙ୍କ ପ୍ରଖ୍ୟାତ ଗୁରୁଥିଲେ ଗାଇ-ଚାଲୁଚ ।

ବୃତ୍ର— ଦେବା—ଚନ୍ତା ନାହିଁ—ଏହି ଖିର କଥା ? କଅଣ ମାଗୁଛନ୍ତି ?

ବଟୁ— କଅଣ ମାଗିବ ? ଖାଇବାକୁ କିଛି— ଆଉ ବ୍ରାହ୍ମଣୀପାଇଁ ଗଣ୍ଡେ ହେମ—ହୀରକ—ମଣି—ମାଣିକ୍ୟ ଖଚିତ ପଟ୍ଟବସ୍ତ୍ର । ( ହାସ୍ୟ )

ବୃତ୍ର— • ଅଚ୍ଛା ହେଉ—ଖାଇବାକୁ କଅଣ ?

ବଟୁ— ମିଠେଇ, କାକରା, ଅମାଲୁ, ପଣସଖସା, ନଡ଼ିଆକୋରା ହେଉକାରୁ ଦୁଇ ତିନ ଶଗଡ଼; ୨ । ୩ ଭରଣ ଅଚ୍ଛା ମୋଟାଚୁଡ଼ା; ଖୋଳ-ଦହି, ବସାଦହି ଦୁଇଶ ତିନଶ ହାଣ୍ଡି; ଗୁଡ଼ ୩ । ୪ ମହଣ; ଅମ୍ବ, ପଣସ, କଦଳୀ ଆଦି ୫ । ୬ ଶଗଡ଼ ଏତିକି ? ଆଉ କଅଣ ?

ବୃତ୍ର— ଅଚ୍ଛା ଦେବା ।—ପୁନର୍ବାର ଦେବତାମାନେ ଯୁଦ୍ଧପାଇଁ ଉଦ୍ୟୋଗ କରୁଁଛନ୍ତି ।

ବଟୁ— କରନ୍ତୁ ।—ପୁନର୍ବାର କିଛି ବ୍ରାହ୍ମଣକୁ ମିଳିବ ।—ଭଲକଥା ।— ଆଉ କଅଣ ସେ ଜୟ କରିବେ ?—ଫେର୍ ଛଟରଷିଅଙ୍କ ପରି ପଳେଇଯିବେ ।

ବୃତ୍ର— ତୁମ୍ଭ କଥା ସତ୍ୟ ହେଉ—ଆଶୀର୍ବାଦ କରନ୍ତୁ ।

ବଟୁ— ଆଜ୍ଞା, ଏକଥା କହିବାକୁ ଅଛି ? ମୁଁ ଆଶୀର୍ବାଦ କରିବି ନାହିଁ ? ( ସ୍ୱଗତଃ ) ଏଇଟାକୁ ଫେର ଆଶୀର୍ବାଦ କରିବ ?—ଇନ୍ଦ୍ର ନ ହେଲା—ଏଇଟା ହେଲା ? ।—ବାହାରେ । "ଅଣ୍ଡଦନେବ ମରିବୁ" ଏହି ଆଶୀର୍ବାଦ । ବାପାରେ—ବାପାରେ ଶୁଣିବ ଯେବେ ଆଉ କି ରଖିବ ? ସନ୍ଥଲୋକଙ୍କୁ ଯିନା ଆଶୀର୍ବାଦ କରନ୍ତି । ଦୁଷ୍ଟଲୋକଙ୍କ କି ଆଶୀର୍ବାଦ କରାଯାଏ ?

( ରଣବେଶରେ ରୁଦ୍ରପୀଡ଼ର ପ୍ରବେଶ ଓ ପିତାଙ୍କ ପ୍ରଣାମ କରି ଦଣ୍ଡାୟମାନ )

ବୃତ୍ର— ( ରୁଦ୍ରପୀଡଙ୍କୁ କୋଳରେ ଧରି )
ଧନ୍ୟ ତୋ'ର ପିତା, ବାପା ! ଧନ୍ୟ ତୋ'ର ମାତା,
ଧନ୍ୟ ଜନ୍ମ ଋକ୍ଷ୍ୟଙ୍କୁଳେ ତବ ପୁତ୍ର ରତ୍ନ !
ଉଦ୍‌ଘୋଷେ ତୋହର ଖ୍ୟାତି ଦଶଦିଗନ୍ତରେ;
ଅରିନ୍ଦମ ତୁହି ଏକା ଅଟୁ ଏ ତ୍ରିଲୋକେ ।
ରୁଦ୍ର— ପିତଃ ! ତବ କୃପାବଳେ ଅରିନ୍ଦମ ମୁହିଁ
ହୋଇଛୁ ଜଗତେ ଆଜ; ସୁର ଦର୍ପ ଚୂର୍ଣ୍ଣ
ହୋଇଛୁ ଜନକ ! ଏବେ; ତେବେ ମଧ୍ୟ ଇନ୍ଦ୍ର
ବଳାଇଛୁ ବୃଥା ରଣ—ଆଶେ ? କରୁ ରଣ,
ନାହିଁ ଚିନ୍ତା, ସମରାଗ୍ନି କରି ପ୍ରଜ୍ୱଳିତ
କରିବି ତା ଦର୍ପ ଚୂର୍ଣ୍ଣ; ପଣ ମୋର ଏହା ।
ବୃତ୍ର— ବୀରର ଉଚିତ ଉକ୍ତି—ଉଚିତ ପ୍ରତିଜ୍ଞା ।
କେବଳ ତୋ'ଠାରେ ଦେଖେଁ, ତୋହସଙ୍ଗେ ବାପା !
କେ ଯୁଝିବ ? ଅଛି ଶକ୍ତି କାହାର ଏ ଭବେ ?
ଶୁଣୁଛୁ, ବାସବ ପୁନଃ ଯୁଦ୍ଧ—ଆୟୋଜନେ
ହୋଇଛୁ ଉଦ୍ୟୁକ୍ତ ମନେ ପ୍ରକାଶି ଗରବ ।
ରୁଦ୍ର— ଗର୍ବ ହେବ ଅବିଳମ୍ବେ ଜନକ ! ସେ ଗର୍ବ,
ଆଦେଶନ୍ତୁ ପୁତ୍ରାଧମେ ଯିବ ରଙ୍ଗଭୂମେ ।
ବୃତ୍ର— କପଟରେ ପୁତ୍ରମଣି ଦେବ ମୁଁ ଆଦେଶ ?
କପଟବା କିବା ରବି ବୀର ହୋଇ ବୀରେ ?
ବିଷମ ସମସ୍ୟା ଏବେ ଘଟିଛୁ ମୋ ପ୍ରାଣେ ।
ରୁଦ୍ର— ନ ହୁଅ ଅଧୀର ପିତଃ ! ଛିନ୍ନ କର ଆଶୁ
ସ୍ନେହ-ମମତା-ବନ୍ଧନ; ଜନ୍ମି ବୀରକୁଳେ
କି ଭୟ ଥିର ମରଣେ ? କି ଭୟ ଜୀବନେ ?
ନ ଗଲେ ମୁଁ ରଙ୍ଗଭୂମେ ହସିବ ବାସବ,
ହସିବେ ଦାନବେ ପିତଃ ! ହସିବେ ସେ ସୁରେ,
" ପଲ୍ଲବ ଦେଇଥିଲ ଯାହାଙ୍କୁ ମୋ ହସ୍ତେ;
ଜନ୍ମିଲେ ମରଣ ଜନେ ଘଟଇ ଏ ଭବେ,
ଚିନ୍ତ,—ମୃତ୍ୟୁବିଜ୍ଞାପନ ମାତ୍ର ଜାଣିଥାଅ
ହେବ ! ଏ ଭବ-ଭବନେ; ଗର୍ବି ଭକ୍ତି ପିତା

ଏହି ଅସାର ବିଶ୍ୱରେ ମରିବା ବିହିତ;
ପଦ୍ମପୁଷ୍ପ ଦେଲେ ଯୁଦ୍ଧେ ଘଟିବ କୁ-ଖ୍ୟାତି;
ଏହାଙ୍କ ଉଚିତ ପତିଃ ! ଜାଣିଛତ ତୁମ୍ଭେ,
ସ୍ୱବଦୋହୀଙ୍କ କହିବ ତୁମ୍ଭଙ୍କ ଜନକ !
ନିଜେ ଶିର ଦୋଛ ଦେବ ! ଏପରି ଅସ୍ଥିର—
ଏପରି ବ୍ୟାକୁଳ ! ହେବ ଯା' ହେବାର ପିତଃ !
କରିବ ସୁରଙ୍କ ସଙ୍ଗେ ସମର ପ୍ରକଣ୍ଟ

ବୃତ୍ର— ନିଅ ସଙ୍ଗେ ସେନାପତି ଅସଂଖ୍ୟ ବାହିନୀ !

ରୁଦ୍ର— କାର୍ଯ୍ୟନାହିଁ ବାହିନୀରେ, ତେବେ ନେବି କଷ୍ଟ;
ଚାଲ ହେ ସୁନନ୍ଦାସୁର ! ଚାଲ କାଳଭଦ୍ର !
ଯଦି ବା ଅପରି କଷ୍ଟ, କହ ଅକପଟେ ।

ସୁନ— ପୂର୍ବରୁ ଥିଲା ବାସନା, ପୂର୍ଣ୍ଣହେଲା ଏବେ,
କ ଆପରି ମମ ? ଚିର—ଦାସ ତବ ମୁହିଁ;
ଅଦେଶିବ ଯେବେ ତୁମ୍ଭେ ନ ଯିବି, କି ଦେବ ?
ଚାଲନ୍ତୁ ସତ୍ୱର ରଣେ, କର ସୁର ସଙ୍ଗେ
ରଣ, ରଖିବା କୀର୍ତ୍ତି ତ୍ରିଭୁବନ ମଧ୍ୟେ ।

କାଳ— ଚାଲ ଶିର ! ବିଳମ୍ବରେ ନାହିଁ ପ୍ରୟୋଜନ;
ବରୁଣ, କୁବେର, ବାୟୁ ତିନି ମହାରଥୀ
ପଡିଲେ ମୋ'ଭାଗେ; କରି ରଣ ତାଙ୍କ ସଙ୍ଗେ
ପ୍ରେରିବି ନିଶ୍ଚୟ ତାଙ୍କୁ ଶମନ ସଦନେ ।
କହତ ସୁନନ୍ଦ ! ତୋ'ର ଭାଗେ କେଉଁ କେଉଁ
ମହାରଥୀ ? କେତେଜଣ ମାରିବୁରେ ତୁହି ?

ସୁନ— (ସ୍ୱଗତଃ) ସତେ ଯେପରି ତ୍ରିଭୁବନବିଜୟୀ ବୀରଟାଏ—ବରୁଣ କୁବେର, ପବନ ଏ ତିନିଜଣଙ୍କୁ ମାରିପକାଇବ ? କି ଦୁରାଶା ! (ପ୍ରକାଶ୍ୟେ) କାଳଭଦ୍ର ଯଥାର୍ଥ କହିଛ । ଏହିମୁଣ୍ଡରୁ ବାନ୍ଧି-ନେବାଟା ଭଲ ।—ଯୁଦ୍ଧବେଳେ ବାନ୍ଧିବା ଦୁଷ୍କର ।—ସେତେ-ବେଳେ ପୁଣି ଅପଣାଭିତରେ ଟାଣଟାଣି ଲାଗିବ—"ଅବ୍ୟାପା-ରେଷୁ ବ୍ୟାପାର" ଘଟିବ । କହ ସୁନନ୍ଦ! ତୁମ୍ଭଭାଗରେ କିଏ କିଏ ? ତୁମ୍ଭେତ ଜଣେ ବୀରେନ୍ଦ୍ର ମୁକୁଟମଣି ।

ବୃତ୍ର— (ସୁନନ୍ଦକୁ) ଆପଣ ଯୁଦ୍ଧକୁ ଗଲେ ଭଲ ହୁଅନ୍ତା ।—ଯିବେ କି ? (ହାସ୍ୟ)

ବଜ୍ର— ( ହସି ) ହାଃ—ହାଃ—ହାଃ—ବ୍ରାହ୍ମଣେ ଯୁଦ୍ଧ କରିବେ ? ହିଁ ଯାଆନ୍ତୁ—ଦେଖନ୍ତୁ ଏ ବୃଦ୍ଧବୟସରେ କଅଣ ଯିବ ? ଆମ୍ଭ ବ୍ରାହ୍ମଣଙ୍କ ସଙ୍ଗରେ କିଏ ଯୁଦ୍ଧ କରିବ ମହାରାଜ ! ( ପଇତା ଦେଖାଇ ) ଯେବେ ଆମ୍ଭର ଏହି ଅସ୍ତ୍ର ଥିବ—କେତେ ଇନ୍ଦ୍ର—କେତେ ବରୁଣ—କେତେ କୁବେର—କେତେ ଯମ—କେତେ ଅଗ୍ନି—କେତେ ପବନ ଏକାଥରକେ ନିକାଶ ପାଇଯିବେ ।

ବୃତ୍ର— ତେବେ ଅମ୍ଭେ ଏତେ ବ୍ୟସ୍ତ ହେଉଛୁ କାହିଁକି ? ଆପଣଙ୍କୁ ନେବାକୁ ହେବ । ଯାଇ ନ ପାରିଲେ ରଥରେ ନେବା ।

ବଜ୍ର— ( ସ୍ୱଗତଃ ) ସାରିଲାଣି—କାହିଁକି ନିଜର ବଡ଼ାଇ କଲି ? ଏତ ନଷ୍ଟେ ନେଇଯିବ ।—କଅଣ କରିବି ?— ( ପ୍ରକାଶ୍ୟେ ) ମହାରାଜ ! ତା ସତ ଯେ—ଏ ବୃଦ୍ଧାବସ୍ଥାରେ କିଏ ଏତେ ହଟହଟା ହେବ ?—ମୋତେ କ୍ଷମା ଦିଅନ୍ତୁ ।—ବ୍ରାହ୍ମଣୀ ବଡ଼ ହରକତ ହେବ ।—ହଜୁରତ ସବୁ ଜାଣିପାରନ୍ତି ।

ବୃତ୍ର— ( ସହାସ୍ୟେ ) ତେବେ ସେହିକଥା କହନ୍ତୁ—ବ୍ରାହ୍ମଣୀ ହରକତ ହେବ ।

ସୁନ— ବୃଦ୍ଧାବସ୍ଥାରେ ମଧ୍ୟ ଏପରି—

ବଜ୍ର— କି ? ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା । ( ହାସ୍ୟେ ) ତୁମ୍ଭେ କହ, ତୁମ୍ଭଭାଗରେ କିଏ କିଏ ?

ସୁନ— ମୋଭାଗରେ ଇନ୍ଦ୍ର ଓ ଯମଙ୍କୁ ଛାଡ଼ି ସମସ୍ତେ—

ବଜ୍ର— ଯମଙ୍କୁ ଡର ମାଡ଼ିଲାକି ? ତାଙ୍କୁ ପୁଣି କିଏ ନେବ ? ନାହିଁ, ନାହିଁ; ଯମଙ୍କୁ ମଧ୍ୟ ନିଅ । ( ହାସ୍ୟ । )

ସୁନନ— ଯୁବରାଜ ଯାହା ଆଦେଶ କରନ୍ତି ।

ବୃତ୍ର— ଇଚ୍ଛା ତବ ଯାହା ବୀର ! ସମସ୍ତେ ମୋଭାଗେ ।

ବଜ୍ର— ( ସ୍ୱଗତଃ ) ଯାଉଛୁ ତ—ମରିବୁ ।—ଏ ପ୍ରତିଜ୍ଞା ରହିବ ? ( ପ୍ରକାଶ୍ୟେ ) ଯୁବରାଜଙ୍କର ସମସ୍ତେ ନିଅନ୍ତୁ । ଯୁବରାଜ ! ଯମଙ୍କୁ ସୁନନ୍ଦଭାଗରେ ଦିଅନ୍ତୁ । ( ହାସ୍ୟ )

ବୃତ୍ର— ତାର ଇଚ୍ଛା ଯେପରି ସେ ନେଉ, ମୁଁ ବାଣ୍ଟି ଦେବି ନାହିଁ ।

ବଜ୍ର— ହେଲା—ସେଇଆ ହେଲା ।

ବୃତ୍ର— ଯାଉଅଛୁ ପିତଃ ! କର ଆଶୀର୍ବାଦ, ଯେହ୍ନେ ଧନ୍ୟ, କମ୍ବୁ-ବୈଜୟନ୍ତୀ ପ୍ରତ୍ୟାଗତ ହେବ

ଅଶ୍ୱ,— ଆଚରଣ ଦେଖି ପୁନଃ, ହେବ ଧନ୍ୟ;
ଦିଅ ପଦ-ରେଣୁ ଦେବ ! କରିବ ଗ୍ରହଣ,
ମସ୍ତକେ ମୋହର; ଯିବ ଛାଡ଼ି ମୋର ଦେହୁଁ
ସକଳ କଳୁଷ; ପିତଃ ! ହେଉଛୁ ବିଦାୟ ।
( ପଦଧୂଳି ଗ୍ରହଣାନ୍ତର ପ୍ରସ୍ଥାନ ଓ ତତ୍ ପଶ୍ଚାତ୍ କାଳଭଦ୍ର ଏବଂ ସୁନନାସୀର ବୃଦ୍ଧଙ୍କୁ ଅଭିବାଦନ କରି ପ୍ରସ୍ଥାନ । )
ବୃଦ୍ଧ— ଗଲା ରଣେ ଦର୍ପ୍ପି କହୀ ସୁତ ରୁଦ୍ରପୀଡ଼;
କରିବ ସଦ୍ଧାର ସୁରେନ୍ଦ୍ରଶ୍ରେଷ୍ଠ ମନ୍ତ୍ରୀବର !
ମନ୍ତ୍ରୀ— ପରିତ୍ରାଣ ନାହିଁ ଦେବ ! ସୁରଙ୍କର ଆଉ,
ପରିତ୍ରାଣ ନାହିଁ ଅବା ପ୍ରତାପୀ ଇନ୍ଦ୍ରର
ଏହଥର ଯୁବରାଜ ଜାଣି ତାଙ୍କ ଗତି
ପ୍ରତ୍ୟାବୃତ୍ତ ହେବେ ଶମ୍ଭୁ-ପାଶେ ଦାନବେନ୍ଦ୍ର ।
ବୃଦ୍ଧ— ( ସ୍ୱଗତଃ ) ନାହିଁ ତ ଯୁବରାଜ ଜନେ ।
ବୃଦ୍ଧ— କର ସଭାଭଙ୍ଗ ଏବେ ମନ୍ତ୍ରୀଚୂଡ଼ାମଣି !
କାହିଁକି କେଜାଣି ମନ ହେଉଛି ବ୍ୟାକୁଳ ?
ପୁନଃ ଥରେ ଦେଖିବି ମୋ ତନୟ ଶ୍ରୀଚରଣେ ।
ମନ୍ତ୍ରୀ— ଯେ ଆଜ୍ଞା ! ( ସମସ୍ତଙ୍କର ପ୍ରସ୍ଥାନ । )

ପଟକ୍ଷେପଣ ।

—o*o—

ତୃତୀୟ ଦୃଶ୍ୟ—ଦୈତ୍ୟ ଭବନ ।

( ରାଣୀ ଶୀନ୍ଦ୍ରଲା ଓ ଚଞ୍ଚଳା ସଖୀ )

ଶୀଂ— ଚଞ୍ଚଳା ! ଶଚୀ କି ଗଲା ? କହିଲା—ମୋର ସ୍ୱାମୀ ମୋତେ ଉଦ୍ଧାର ନ କଲେ ଯିବ ନାହିଁ ! ଏବେ ତାକୁ, ଦାସୀକାମ କରାଇବା ଉଚିତ ନୁହେଁ ?
ଚଞ୍ଚଳା— ମଣିମା ! ତାକୁ ଦାସୀକାମ କରାଇବା ଉଚିତ । ବୃଥାରେ ସେ କାହିଁକି ବସି ଖାଇବ ?—କଥାରେ କହନ୍ତି, ପର ବସଖାଇଲେ ନଇବାଲି ଅଣ୍ଟେ ନାହିଁ ।
ଶୀ— ମହାରାଜାଙ୍କୁ ମୁଁ କହିଥିଲି । ସେ ମଧ ସେହିପରି ହୁକୁମ କରିଛନ୍ତି ।—ଇନ୍ଦ୍ର ଟା କଅଣ ସତେ ଥରେ ଯୁଦ୍ଧ କରିବ ?

ଚ— ଯୁଦ୍ଧ କଲେହ୍ଦ ସଙ୍ଗେ ସେ ଅମ୍ଭ ମହାରାଜାଙ୍କ ହସ୍ତରୁ ଦେବ
ଶଚୀଙ୍କୁ ଏଠାରୁ ନେବ ? ବୃଥା ଆଶା ସେ ସବୁ ।—
ଐ— ଯାହାର ତପସ୍ୟାରେ ତୁଷ୍ଟହୋଇ ସ୍ୱୟଂ ଦେବାଧିଦେବ ମହା-
ଦେବ ଅମର—ଅଭୟବର ଦେଇଛନ୍ତି ତାଙ୍କୁ ପୁଣି କିଏ ପରାସ୍ତ
କରିବ ? ସେତ ସେ—ରୁଦ୍ରପୀଡଙ୍କୁ ପରାସ୍ତ କରିବାକୁ କାହାର
କ୍ଷମତା ଅଛି ? ସେତ ତପୋଧିକ ।
( ରୁଦ୍ରପୀଡର ପ୍ରବେଶ ଓ ମାତାଙ୍କୁ ପ୍ରଣାମ । )
ରୁଦ୍ର— କାହିଁକି ମା ! ସ୍ମରୁଥିଲ ଏ ଅଭାଗା ପୁତ୍ରେ ?
ଐ— ଶଚୀର ଗରବ କଥା କହୁଥିଲି ବାପା !
ରୁଦ୍ର— ଶଚୀର ଗରବ ? ମାତଃ ! କି ଗର୍ବ ତାହାର ?
ଐ— ଆଦେଶିଲେ ମହାରାଜା ମୁକ୍ତ କରିବାକୁ,
ସେହି ଅଭାଗିନୀ ବହି ଅତି ଗର୍ବ ମନେ
କହିଲା "ତୁମ୍ଭଦ୍ୱାରେ ମମ ନାହିଁ ପ୍ରୟୋଜନ,
ଯେବେ ନିଜେ ପତି ଆସି ଉଦ୍ଧାରିବେ ଏଥୁଁ
ତେବେ ଯିବି, ନୋହିଲେ ମୁଁ ଥିବି କାରାଗାରେ,
ଚିରକାଳ ଏହିପରି; ନାହିଁ ଚାହେଁ ମୁକ୍ତି ।,,
ଆଉ ସେହି ଅଭାଗିନୀ,—ଛାଡ ସେହି କଥା,
କହ ବାପା ରଣବେଶ କରେଛଇ କିପାଁ
ଆଜ ତୋର ? ଯିବୁକିରେ ବାପା ରଙ୍ଗଭୂମେ ?
ରୁଦ୍ର— ମାତଃ ! କି କହିବି ଆଉ ? ଜାଣିତ ପାରୁଛ
ଯେଣୁ ବୀରେନ୍ଦ୍ର ଜନନୀ; ରଣ—ଅୟୋଜନେ
ମାତିଛନ୍ତି ସୁରେ ପୁନଃ; ତେଣୁ ଅଦେଶିଲେ
ପିତା ମୋତେ ଆନନ୍ଦରେ ଦୟାର୍ଦ୍ର ହୃଦୟେ ।
ଐ— କେତେ ଯୁବକର ପୁଣି ଲଭି ପରାଜୟ
ବଳାଇଅଛନ୍ତି ସୁରେ ଯୁଦ୍ଧର ପିପାସା ?
ଯାହା ହେଉ ବୀରମଣି । ଛାଡିବି ନାହିଁ ମୁଁ
ତୋତେ, ସେ କାଳ ସମରେ; କେମନ୍ତେ ବାଞ୍ଚିବି
କହ ? ଛାଡିବି କି ହୃଅଇ ମଣି ତେଜ ଫଣୀ ?
ରୁଦ୍ର— ବୀରେନ୍ଦ୍ର ଜନନୀ ପୁଣି ବୀରେନ୍ଦ୍ର ବନିତା—
ବୀରେନ୍ଦ୍ରର କନ୍ୟାହୋଇ କହୁଛ ଏ କଥା ?

ବୀରଧର୍ମ ବୋଲି ମୁଁ କି ହେବି ମା ଦୂଷିତ
ଇହ ପରକାଳେ ? ତୁଚ୍ଛ ଏ ଜୀବନ ପାଇଁ ?
ପିତାଦେଶ ଲଙ୍ଘି ହେବି ନରକେ ପତିତ ?
ମାତା ହୋଇ ପୁତ୍ରର ଏ ଅଶୁଭ କଲ୍ୟାଣ ?
ଯିବି ମୁଁ ଜନନି ନଷ୍ଟେ; ଦେଇ ପଦ—ରେଣୁ
କର ଶୁଭ—ଆଶୀର୍ବାଦ, ଫେରିବି ଯେମନ୍ତେ
ଦେବ—ଦର୍ପ ଚୂର୍ଣ୍ଣ କରି; ଦିଅ ମା ମେଲାଣି ।

ଐ— କିପାଇଁ ମୋ ମନ ବାପା ! ହେଉଛି ବ୍ୟାକୁଳ;
ଯାଅ ନାହିଁ ଏ ବାରକ ରଙ୍ଗଭୂମେ ବାପା ।

ରୁଦ୍ର— ପିତାଦେଶ ଅଲଙ୍ଘ୍ୟ ଯେ ଜାଣନା କି ମାତଃ !
ଯେଉଁ ପିତାଦେଶେ ରାମ ରଘୁକୁଳ ନାଥ
ଗଲେ ଚତୁର୍ଦ୍ଦଶବର୍ଷ ବନେ ଅତି ମୁଦେ;
ଜାଣିଛତ ପିତାଦେଶ ପାଳନର ପାଇଁ
ନିଜ ଜନନୀଙ୍କୁ ହତ୍ୟା କଲେ ପର୍ଶୁଧର,
ସେହି ଅଲଙ୍ଘ୍ୟ ଆଦେଶ ଲଙ୍ଘିବାକୁ ମୋତେ
ଦେଉଅଛ ଉପଦେଶ ? ଉଚିତ କି ତବ ?
ଛାର ଦେବଗଣ ଆସି କରିବେ ଦଳନ
ବିଶ୍ୱଜୟୀ ରକ୍ଷଃଗଣେ ? ବୀର ହୋଇ ମାତଃ !
ଦେଖିବି ମୁଁ ଏହା ? ଆଉ ଜୀବନ ମୋହର ?
ବୀରଧର୍ମ—ମାତା ପ୍ରାୟ କହୁଅଛ କଥା ?
ହଅନ୍ତୁ ହତାଶ ଅଶ୍ରୁ, ପଶି ସେ ସମରେ
ଦେବି ପରାଭବ ସେହି ମୂଢ଼ ଦେବଗଣେ;
ଦେବ ପରାଭବ ରଣେ ମୃତ୍ୟୁ ଅଖଣ୍ଡଳେ ।

ଐ— (କ୍ରନ୍ଦନସ୍ୱରେ) କି କରିବି ପୁତ୍ର ! ମୋତେ ଦିଶେ ନାହିଁ କିଛି
ଶୁଣି ତୋ ପ୍ରତିଜ୍ଞା ବାଣୀ, କି ଜାଣିବୁ ବାପା !
ଜନନୀର ମନକଥା ? ନୁହେ ମୁଁ ବ୍ୟାକୁଳ
କେବେ, ଦେଖି ତୋ'ର ରଣବେଶ; କିମ୍ପା ଆଜି
କେ ଜାଣିରେ ବୀରମଣି ! ଅଥିର ମୋ ମନ;
ଭୁଲ ବୁଝିବୁ ମନରେ ତାହା ? କେବେଁ ନୁହେଁ ।

ବୃତ୍ର— ଜାଣିଛୁ ମା ଜନନୀର ଋଣ ପରିଶୋଧ
ନ କରି ପାରନ୍ତି ପୁତ୍ରେ ଇହ—ପରକାଳେ;
ମୋପରି ଅଧମ ସୁତ ସୁଝିବ କପରି ?
କିନ୍ତୁ ମାତଃ ! ସ୍ୱଧର୍ମ ହେବାକି ଉଚିତ ?
ଯିବ ଯେବେ ପ୍ରାଣ ଯିବୁ ଜାଣିଛୁ ଜନନୀ !
କିନ୍ତୁ ବୃଥା ଗଲେ କିଛି ଯଶଃ ନାହିଁ ଭବେ;
ଯୁଦ୍ଧେ ଯେବେ ଯାଏ ପ୍ରାଣ ବୀର ତନୟର
ବସନ୍ତି ସ୍ୱର୍ଗଲୋକେ ତା'ର ସପତ ପୁରୁଷେ;
ପଶ୍ଚାତ୍ତରେ ବୀର ଯେବେ ହୁଏ ପରାଙ୍ମୁଖ
ରଣେ ସପତ ପୁରୁଷ ତା'ର ହୁଅନ୍ତି ନାରକୀ;
ଏଥିପାଇଁ ମାତଃ ! ତୁମ୍ଭେ ହେଉଛ କାତର ?
ଦିଅନ୍ତୁ ବିଦାୟ ତୁରା ସନ୍ତୋଷ ହୃଦୟେ,
ଅସନ୍ତୁଷ୍ଟ ହେଲେ ମାତଃ ! ଘଟିବ ଅଶୁଭ;
ଏଥି ଜାଣି ସତ୍ୱ, ଆଶୁ ଦିଅ ମା ! ମେଲାଣି ।

ଐ— ଯାଅ ବାପା ! କି କହିବି ? ନ ପାରିଲି ରଖି
ତୋତେ, ଗଣ୍ଠିଧନ ମୋର ! ଜଣାଉଛି ଶିବେ
ଜୟ କରି ରଣେ,—ଦେଇ ଦେବେ ପରାଭବ
ପ୍ରତ୍ୟାବୃତ୍ତ ହୁଅ ଆସି ଅନନ୍ୟ ମନରେ
ଜନକ—ସଦନେ ଆଶୁ, ଆଶୀର୍ବାଦ ମୋର । ( କ୍ରନ୍ଦନ )

ବୃତ୍ର— ( ଲୁହପୋଛି ) କାନ୍ଦ ନାହିଁ ମାତଃ ! ମମ ଶୁଭ—ଅନୁକୂଳେ;
ଯେବେ କି କାନ୍ଦିବ ମାତଃ ! ହେବ ଅମଙ୍ଗଳ;
ଧୈର୍ଯ୍ୟଧର, ଫେରିବି ମୁଁ ତୁରା ତବପାଶେ ।

ଐ— ଯାଅ ବାପା ! ବେଗେ ହୁଅ ପ୍ରତ୍ୟାବୃତ୍ତ ନାଶି
ଦେବଙ୍କ ଗରବ; ଯାଅ, ହେଲି ମୁଁ ଆଶ୍ୱସ୍ତ ।

ବୃତ୍ର— କହିଯିବି ଏକ କଥା ଲଜ୍ଜା ହୁଏ ମନେ ।

ଐ— କି କଥା କହ ତ ବାପା ! ଜନନୀର ପାଶେ
ଲଜ୍ଜା ପୁଣି ଅଛି କିସ ଅରେ ଗଣ୍ଠିଧନ ?!
କହ ବାପା ! ଶୁଣିବାକୁ ବଳୁଛି ମାନସ ।

ବୃତ୍ର— ସରଳା ସେ ଇନ୍ଦୁବାଳା କଲେ କିଛି ଦୋଷ
କରିବ ମାର୍ଜନା ମାତଃ ! ସଦୟ ହୃଦୟେ; ।

ଜାଣେ ନାହିଁ ସେତ କିଛି ଦୋଷାଦୋଷ ପ୍ରାଣେ,
ଏହି ଭିକ୍ଷା ଜନନୀ ! ଶ୍ରୀପଦେ ମୋହର ।

ବୃତ୍ର— ଦେଉଛି ବିଦାୟ ମାତଃ ! ଦିଅ ପଦ ରେଣୁ ।
( ପଦଧୂଳି ମସ୍ତକେ ଦେଇ ପ୍ରସ୍ଥାନ )

ଐ— ଗଲୁ ବାପା ! ଗଲୁ ଅନ୍ଧ ! ମୋର ଚକ୍ଷୁ—ନୋଳା !
କେମନ୍ତେ ବଞ୍ଚିବ ମୁହିଁ ? ଅଥିର ମୋ ମନ;
ମନ ! ଧୈର୍ଯ୍ୟଧର, ହେବ ସୁତର ଅଶୁଭ,
କହି ଯାଉଛି ସେ ନାଁକେ; ବୃଥାସିନା ଜଲ୍ଲ
ଶୀରକ୍ଲେ, ଅମଙ୍ଗଳ ଜନ୍ମ ଯେବେ ଭବେ,
ଧର ଧୈର୍ଯ୍ୟ ମନ ! ଧର ତୁ ସାନ୍ତ୍ୱନା ଏବେ ।

ପଟକ୍ଷେପଣ ।

——※——

## ଚତୁର୍ଥ ଦୃଶ୍ୟ—ଅନ୍ତଃପୁର ।

( ଇନ୍ଦୁବାଲା ଓ ଶଚୀ ଉପବିଷ୍ଟା ଏବଂ ଦାସୀ ଦଣ୍ଡାୟମାନା )

ଇନ୍ଦୁ— ( ଶଚୀଙ୍କ ଅନାଇଁ ) ଦେବି ! ତୁମ୍ଭେ ଯେ କାରାଗାରରେ ଥିଲ ସେ ବିଷୟରେ ମୁଁ ଭାରି ଚିନ୍ତିତ ଥିଲି । ଅସୁରମାନେ କି ଦେବ ଦେବୀଙ୍କୁ ଚିହ୍ନି ପାରନ୍ତି ! ସେମାନଙ୍କର ସମସ୍ତ କାର୍ଯ୍ୟ ଅସୁରଗନ ଯାହା ହେଉ, ତୁମ୍ଭେ ମୋ ପାଖରେ ଥିବାରୁ ମୋତେ ବେଶ୍ ସୁଖ ବୋଧ ହେଉଛି । ତୁମ୍ଭର ସକଳ ଅଭାବ ମେଚେ ନାହିଁ ଦେଉଥିବି । ମୋ ପାଖରେ ତୁମ୍ଭର କୌଣସି ବିଷୟରେ ଅଭାବ ଘଟିବ ନାହିଁ ।

ଶଚୀ— ତୁମ୍ଭ ହୃଦୟରୁ ମୁଁ ବେଶ୍ ଭଲ ଅବସ୍ଥାରେ ଅଛି । କିଛି ଅଭାବ ନାହିଁ । ମୁଁ ଯେ କାରାଗାରରେ ଥିଲି ସେଥିପାଇଁ ମନେ ହେଲେ ଦୁଃଖ ମନେ କରେ ନାହିଁ । ଯାହା ଭାଗ୍ୟରେ ଥାଏ ତାହା ଘଟେ । ସେଥିପାଇଁ ମୁଁ ଦୁଃଖ ଓ ସୁଖ ଏ ଉଭୟଙ୍କୁ ସମାନ ବୋଧ କରେଁ । ମୁଁ ତ ତୁମ୍ଭପତିଙ୍କର କିମ୍ବା ଦୈତ୍ୟରାଜଙ୍କର କିଛି ଦୋଷ କରି ନ ଥିଲି ? ସେ ମୋତେ ଯେ କାହିଁକି ଏଠାକୁ ଆଣି ବନ୍ଦୀ କଲେ କେବଳ ତାହାଙ୍କୁହିଁ ଜଣା । ଏ ଭାଗ୍ୟ-ଲିପି ନୁହେଁତ ଆଉ କଅଣ ? ଯାହା ହେଉ ତୁମ୍ଭ କୃପାରୁ ମୋର କୌଣସି ଦୁଃଖ ନାହିଁ ।

ଇନ୍ଦ୍ର— କହୁଲ ସତ—ଅସୁରମାନେ ପୁରକୁ ଛାଡ଼ି ପାରନ୍ତି ନାହିଁ । ସେ ସବୁ କଥା ପାଶୋର ପକାନ୍ତୁ । କିପରି ଏଠାରୁ ଯିବେ । ତାହା-ଚିନ୍ତା କରନ୍ତୁ ।

ଶଚୀ— ତାହା ଚିନ୍ତା କରିବି ନାହିଁ—ଯେବେ ସ୍ୱାମୀ ଆସି ଏଠାରୁ ନେବେ ତ ଯିବି—ମୁଁ ସ୍ୱୈରିଣୀପରି କାହିଁକି ପଳେଇବି ?

ଇନ୍ଦ୍ର— ଦେବି ! ତୁମ୍ଭେ ସବୁ ଜାଣିପାର ।—ଦୟାକରି କହନ୍ତୁ ଆପଣ କିପରି ଏଠାରୁ ମୁକ୍ତ ହେବେ ।

ଶଚୀ— ମୋର ସ୍ୱାମୀ ଦୈତ୍ୟରାଜଙ୍କୁ ଯୁଦ୍ଧରେ ପରାଜୟ କରି ଅଳ୍ପଦିନ ମଧ୍ୟରେ ମୋତେ ଉଦ୍ଧାର କରିବେ ।

ଇନ୍ଦ୍ର— ଦେବି ! ମୋ ସ୍ୱାମୀଙ୍କର କିଛି ଅମଙ୍ଗଳ ଘଟିବ ନାହିଁତ ?

ଶଚୀ— ( ମୌନାବଲମ୍ବନ ପୂର୍ବକ ) ତାହା ସେହି ଦେବାଧିଦେବ ମହାଦେବଙ୍କୁ ଗୋଚର ।

ଇନ୍ଦ୍ର— ଯାହା ହେଉ, ମୋ ସ୍ୱାମୀଙ୍କର ଅମଙ୍ଗଳ ଚିନ୍ତା କର ନାହିଁ । ବର୍ତ୍ତମାନ ମୋତେ କପଟ ନ ରଖି କହନ୍ତୁ ଆପଣଙ୍କର କେଉଁ ଭଲ ପଦାର୍ଥରେ ମନ ବଳୁଛି ? ତାହା ଅବିଳମ୍ବେ ଆଣାଇ ଦେବି ।

ଶଚୀ— ( ସ୍ୱଗତଃ ) ମୋ' ଉପରେ କେତେଦୂର ଦୟା ! ମୁଁ ଏହି ଦୈତ୍ୟ ପୁରରେ ଥାଇ ଏ କେତେଦିନ ହେଲା ମୋତେ କୌଣସି ଦୁଃଖ ବା କଷ୍ଟ ଘଟି ନାହିଁ । ( ପ୍ରକାଶ୍ୟେ ) ମା ! ତୁମ୍ଭ କୃପାରୁ କିଛି ଅଭାବ ଘଟି ନାହିଁ । କେବଳ ଟିକିଏ ଗୀତ ଶୁଣିବାକୁ ଇଚ୍ଛା ହେଉଛି; ପୂର୍ଣ୍ଣ କରି ପାରିବ କି ?

ଇନ୍ଦ୍ର— ଅବଶ୍ୟ ପୂର୍ଣ୍ଣ କରିବି ।—ଦାସି ! ଶୀଘ୍ର ଯାଇ ନର୍ତ୍ତକୀକୁ ଡାକି ଆଣିବୁତ ।—

ଦାସୀ— ଯେ ଆଜ୍ଞା ମଣିମା ( ପ୍ରସ୍ଥାନ । )

ଇନ୍ଦ୍ର— କହନ୍ତୁ, କୌଣସି ଖାଦ୍ୟ ପଦାର୍ଥରେ କି ପରିଧାନରେ ମନ ବଳୁଛି ? ଶୀଘ୍ର ଆଣାଇଁ ଦେବି ।

ଶଚୀ— ନା—ସେ ସବୁ କିଛି ଦରକାର ନାହିଁ ।

( ନର୍ତ୍ତକୀ ଓ ଦାସୀର ପ୍ରବେଶ । )

ଇନ୍ଦ୍ର— ଗୋଟିଏ ଭଲଗୀତ ଗାଅ । ( ଶଚୀଙ୍କୁ ) କିପରି ଗୀତ ବୋଲିବାକୁ ହେବ ବରାଦ କରନ୍ତୁ ।

ଶଚୀ— ତୁମ୍ଭର ଯେପରି ଇଚ୍ଛା ।—

ଇନ୍ଦ୍ର— କାହିଁ ଆପଣ ବାଦ କରନ୍ତୁ ।
ଶଚୀ— କାହିଁ ତୁମ୍ଭେ ବିବାଦ କର ।
ଇନ୍ଦ୍ର— ଆପଣଙ୍କ ମନୋମତ ଗୀତ ଗାଇବାକୁ ବାଦ କରନ୍ତୁ ।
ଶଚୀ— ଅମ୍ଭମାନଙ୍କ ବର୍ତ୍ତମାନ ଅବସ୍ଥା ତୁଳନାରେ ଗୋଟିଏ ଗୀତ ଗାଇଲେ ଭଲ ହୁଅନ୍ତା ।
ଇନ୍ଦ୍ର— ଅଚ୍ଛା ହେଉ ।—( ନର୍ତ୍ତକୀକୁ ) ଦେଖ ଯେପରି ବାଦ କଲେ ସେହିପରି ଗୀତଟିଏ ଗାଅ ।
ନର୍ତ୍ତକୀ— ନୃତ୍ୟସହ ଗୀତ :—

ରାଗ—ଶଙ୍କରାଭରଣ—ତାଳ ଝୁମ୍ପା ଓ ପହପଟ ।

ମାନନ ! ଧନ୍ୟ ଦୟା ତୁମ୍ଭର । ରକ୍ଷିଲ ଦେବୀଙ୍କୁ ନିଜ ପାଶର । ଘୋଷା ।

ନୈମିଷ-ଅରଣ୍ୟ ଦେବୀଙ୍କୁ ଘର ।
ଆଣିଣ ଦେଲେ ଯେ ପିତାଙ୍କ କର । ୧ ।
ଦୈତ୍ୟେଣ ଆଦେଶେ ରକ୍ଷି ନିର୍ଭର ।
କାରାଗାରେ ଦେଲେ ଚନ୍ଦ୍ର କୁମାର । ୨ ।
ଦୁଃଖରୁ ଦେବୀଙ୍କୁ କର ଉଦ୍ଧାର ।
କରୁଛ ସକଳ ଅଭାବ ଦୂର । ୩ ।
ହୋଇଣ ବଧୂ ଦାନବ କୁଳର ।
ଦେଖ ହେଲ ତୁମ୍ଭେ ବଣ ମଧର । ୪ ।

ଦାସୀ— ( ଦୂରକୁ ଅନାଇଁ ) ଯୁବରାଜ ଆସୁଛନ୍ତି ।
ଇନ୍ଦ୍ର— ( ସମସ୍ତଙ୍କୁ ) ଏବେ ତୁମ୍ଭେମାନେ ଯାଅ । ( ଶଚୀଙ୍କ ) ଦେବ ! ବର୍ତ୍ତମାନ ଯାଅନ୍ତୁ—ପଛେ ଆସିବେ । ( ସମସ୍ତଙ୍କର ଦ୍ରୁତବେଗେ ପ୍ରସ୍ଥାନ ଓ ରୁଦ୍ରପୀଡ଼ର ପ୍ରବେଶ )
ରୁଦ୍ର— ଚନ୍ଦ୍ରାନନେ ! ନୃତ୍ୟ ଗାନ ହେଉଥିଲା ପରା ?—ସବୁ ଦିନେ ଏହିପରି ଆମୋଦ ପ୍ରମୋଦରେ ରତ ହୋଇ ମନ ଉଲ୍ଲାସ କରୁଥିବ ।
ଇନ୍ଦ୍ର— ଦେବ ! ଯେତେବେଳେ ଯାହା ମନ ଚାହେଁ ଆପଣଙ୍କ ସ୍ନେହ ଓ ଦୟାରୁ ସେତେବେଳେ ତାହା ମୋତେ ମିଳେ ।—ଆମ୍ଭେମାନେ ସ୍ତ୍ରୀଲୋକ—ନଜୁନିରେ କେତେ କାଳ ବସି ରହନ୍ତି ? ଟିକିଏ ଆମୋଦ ପ୍ରମୋଦ କଲେ ମନ ଖୁସୀ ହୁଏ । ଦେବ ! ଆଜି ମୋ ଅଙ୍ଗ ଆପଣଙ୍କର ଏହି ରଣବେଶ ଦେଖି ବିଶେଷ ଦୁଃଖିତ ।—ମନ ବ୍ୟାକୁଳ ହେଉଛି । କଉଣ ଯୁଦ୍ଧକୁ ଯିବେ କି ?

ରୁଦ୍ର— ହଁ ପ୍ରିୟେ ! ଯୁଦ୍ଧକୁ ଯିବ ।

ଇନ୍ଦୁ— ( କରୁଣସ୍ୱରେ ) ଦେବ ! ଯୁଦ୍ଧ କଥା ଶୁଣି ଆଜ କାହିଁକି ହୃଦୟ ବ୍ୟାକୁଳ ହେଉଛି । ଆପଣ ଏତେଥର ଯୁଦ୍ଧକୁ ଯାଇଥିଲେ ଗଲାବେଳେ ଅଧୀନୀ ବ୍ୟାକୁଳ ହୋଇଥିଲା କି ? ବରଂ ସନ୍ତୋଷଚିତ୍ତରେ ଉତ୍ସାହ-ସହିତ ବିଦାୟ ଦେଇଥାଏ । ଏଥର କେଜାଣି କାହିଁକି ମନ ଏପରି ବ୍ୟାକୁଳ ହେଉଛି । ପ୍ରାଣନାଥ ! ଏବାରକ ଯୁଦ୍ଧକୁ ଯାଅ ନା ।—

ରୁଦ୍ର— ପ୍ରାଣାଧିକେ ! ବର୍ତ୍ତମାନ ଦେବତାମାନେ ଉନ୍ମତ୍ତ ହୋଇ ଯୁଦ୍ଧ କରିବାକୁ ମନ ବଳାଇଛନ୍ତି । ମୁଁ ଯଦି ନ ଯାଏ ତେବେ ମୋତେ ଲୋକେ ନରାଧମ ନ କହି ଆଉ କଅଣ [illegible] କହିବେ ? ଆଉ ମଧ୍ୟ ପିତା ମୋତେ ଆଦେଶ କରିଛନ୍ତି । ମୁଁ ସେହି ପିତାଙ୍କର ଆଦେଶ ପ୍ରତିପାଳନ କରିବାକୁ ନିଶ୍ଚୟ ଯୁଦ୍ଧକୁ ଯିବି । ତୁମ୍ଭେ ଏପରି ଅଧୀର ହୁଅ ନା ।

ଇନ୍ଦୁ— ( କ୍ରନ୍ଦନସ୍ୱରେ ) ପ୍ରାଣନାଥ ! ପୁରୁଷମାନେ କି ନାରୀର ମନ କଥା ଜାଣି ପାରନ୍ତି ?—ନା—ଜାଣିପାରୁଥିଲେ କି ଏପରି ନିଷ୍ଠୁର ହୁଅନ୍ତେ ? ଦେବ ! ମୋର ମନତ ସାନ୍ତ୍ୱନା ଲାଭ କରୁ ନାହିଁ । ମୁଁ ତ କେବେହେଁ ଆପଣଙ୍କୁ ଯୁଦ୍ଧକୁ ଯିବାପାଇଁ ଛାଡ଼ି ଦେବି ନାହିଁ ।—ତେବେ ଯିବତ ଯାଅ ।

ରୁଦ୍ର ( ଚିବୁକ ଧରି ) ବିଧୁମୁଖି ! ପ୍ରାଣପ୍ରିୟେ ! ଜୀବନ ସର୍ବସ୍ୱ ! ଅଧୀର ହୁଅ ନା ବ୍ୟାକୁଳ ହୁଅ ନା—ପ୍ରାଣାଧିକେ ! ତୁମ୍ଭେ କି ଜାଣ ନା ଏ ସଂସାରରେ ଯେ କି ବୀର କୁଳରେ ଜନ୍ମ ଲାଭକରେ ହୁଏତ ସେ ଶତ୍ରୁର ନିର୍ମମ ଅସ୍ତ୍ରାଘାତ—ନାହିଁ ତ ଚିରକାଳ ପାଇଁ ଅନନ୍ତର ଅନନ୍ତ ଗର୍ଭରେ ଲୀନ ହେବ—ଏହି ଦୁଇ କଥାରୁ ଏକ କଥା ଘଟିଥାଏ । ତୁମ୍ଭେ ଜାଣି ଶୁଣି କାହିଁକି ଏପରି ବ୍ୟାକୁଳତା—ଅଧୀରତାକୁ ଆହ୍ୱାନ କରୁଛ ?

ଇନ୍ଦୁ— (ଦୁଇହସ୍ତରେ ରୁଦ୍ରପୀଡ଼ର ଗଳାବେଷ୍ଟନ କରି ଅତି କ୍ରନ୍ଦନସ୍ୱରେ) ପ୍ରାଣନାଥ ! ଯେବେ ସେ ଯୁଦ୍ଧକୁ ଆପଣ ଯିବେ ତେବେ ଏ ଦାସୀକୁ ସଙ୍ଗରେ ନେଇଯା'ନ୍ତୁ । ମୁଁ ଆପଣଙ୍କୁ ଛାଡ଼ି ରହିପାରିବି ନାହିଁ । ଜୀବନେଶ୍ୱର ! ପିତ୍ରାଦେଶ ପାଳିବାକୁ ଯାଇଁ ରଘୁପତି ଶ୍ରୀରାମଚନ୍ଦ୍ର ଯେପରି ସୀତାଙ୍କୁ ସଙ୍ଗରେ ନେଇ ଯାଇଥିଲେ ଅସ୍ମ-

ଗୀମାକୁ ସେହପର ଦୟାପୂର୍ବକ ସଙ୍ଗରେ ନିଅନ୍ତୁ । ମୁଁ ଆପଣଙ୍କ ସଙ୍ଗେ ସଙ୍ଗେ ଥିବ । ଆପଣ ବୀର ମୁଁ ଅବଶ୍ୟ ବୀରର କନ୍ୟା, କେବଳ ବୀରର କନ୍ୟା ନୁହେଁ—ବୀରର ଭାର୍ଯ୍ୟା; ସୁତରାଂ ମ ବୀରା ।—ବୀର ହୋଇ ବୀରସଙ୍ଗେ ଯିବ ସେଥିପାଇଁ ମୋତେ ଲଜ୍ଜା ହେବ ନାହିଁ, ଯେବେ ଆପଣଙ୍କ ହୃଦୟ ପାଷାଣରେ ଗଢ଼ାହୋଇ-ଥିବ ତେବେ ସିନା ମୋତେ ନେବେ ନାହିଁ । ମୁଁ ଜାଣେ ଆପଣଙ୍କ ହୃଦୟ କୋମଳ ଉପାଦାନରେ ଗଢ଼ା,—ଏଣୁ ଜାଣୁଛି ମୋତେ ନିଶ୍ଚୟ ନେବେ । ମୋର ମନ ଥୟ ହେଉ ନାହିଁ । ସର୍ବଦା ବ୍ୟାକୁଳ ହେଉଛି । ଆପଣଙ୍କୁ ଛାଡ଼ି ମୁଁ କ୍ଷଣମାତ୍ର ବଞ୍ଚିପାରିବ ନାହିଁ । ମୋତେ ସଙ୍ଗରେ ନିଅନ୍ତୁ । ଆପଣଙ୍କର ମଙ୍ଗଳ ହେବ । ଆପଣ ଯୁଦ୍ଧ କରି କରି ଥକିଗଲେ ମୁଁ ଅସ୍ତ୍ରଧାରଣ ପୂର୍ବକ ଶତ୍ରୁଙ୍କ ସମ୍ମୁଖୀନ ହେବି । ଦେବଗଣ ଜଣେ ରକ୍ଷଃରମଣୀର ଯୁଦ୍ଧ ଦେଖନ୍ତୁ ।—ସଂସାରର ଇତିହାସରେ ଆପଣଙ୍କ ପବିତ୍ର ନାମ ସ୍ୱର୍ଣ୍ଣାକ୍ଷରରେ ରହିବ ।—ପ୍ରାଣନାଥ ! ମୋତେ ନିଅନ୍ତୁ ଆପଣଙ୍କୁ ନ ଦେଖି ମୁଁ ବଞ୍ଚିପାରିବ ନାହିଁ । ( ଗଳା ଛାଡ଼ି ରୁଦ୍ରପୀଡ଼ର ଚରଣରେ ନିପତିତା ଏବଂ ଦୁଇହସ୍ତରେ ପଦଧାରଣ ପୂର୍ବକ ) ଅଭାଗୀକୁ ସଙ୍ଗରେ ନିଅନ୍ତୁ ।—ଏ ପ୍ରାଣକୁ ଯେବେ ରକ୍ଷିବାକୁ ଚାହାନ୍ତି ନିଅନ୍ତୁ—ନିଅନ୍ତୁ—ନିଅନ୍ତୁ ।—

ରୁଦ୍ର— ( ସ୍ୱଗତଃ ) ଆହା ! ରମଣୀର ମାୟା-ମମତା-ବନ୍ଧନ
ଅଟଇ ଅଚ୍ଛେଦ୍ୟ ଭବେ, ଛେଦିବ କିପରି
ମୁଁ ହି ଏବେ ? ପବିତ୍ର ସେ ପିତାଦେଶ ମୋର
ହେବ ନାହିଁ କି ପୂରଣ ? ହେବ ନାହିଁ କି ସେ
ବାସବର ଦର୍ପଚୂର୍ଣ୍ଣ ? ଫେରିବି କି ଏବେ ?
ଦଣ୍ଡେ ନାହିଁ ଆଉ ବୁଦ୍ଧି; ହେଉଛି କୁଣ୍ଠିତ
ମସ୍ତିଷ୍କ ମୋହର ତନ୍ଦ୍ରା ? ଛାଡ଼ିବ ନାହିଁ ସେ
କେବେହେଁ ଜାଣୁଛି ନିଶ୍ଚୟ; କରିବି କି ଏବେ ?
( କ୍ରୋଧେ ) ନ ହେବି ତାହାକୁ ଯେବେ ନିଷ୍ଠୁର ନିର୍ଦ୍ଦୟ
ବଚନ ଛାଡ଼ିବ ତେବେ; ଜାଣୁଛି ମୁଁ ମନେ;
କରିବି କି ତାହା ? କି କଲେ ଅବଳା
ନ ଛାଡ଼ିବ କେବେହେଁ, ଏହା ସ୍ୱତଃସିଦ୍ଧ କଥା ।

( କରୁଣସ୍ୱରେ ) ଅନାଇଲେ ତାକୁ ଅସୁ ନାହିଁ ମମ ମୁଖେ
ନିଷ୍ଠୁର ନିର୍ଦ୍ଦୟ ବାଣୀ; ତାହାହେଲେ ନିଶ୍ଚେ
ହେବ ସେ ଅସ୍ୱସ୍ତିଭାଜନା; ନାହିଁ ନାହିଁ ମନ !
କି କହିବେ ତାହା, ହେବ ଗୁରୁଦୋଷ ଭବେ ।

(ସ୍ୱହସ୍ତରେ ଇନ୍ଦୁବାଳାଙ୍କୁ ଉଠାଇ ଓ ଲୁହ ପୋଛି ।) ପ୍ରିୟେ କାତର ହୁଅ ନାହିଁ । ତୁମ୍ଭେ ରମଣୀ; ରମଣୀଲୋକ ଯୁଦ୍ଧକୁ ଯିବା ଉଚିତ ନୁହେଁ । ବିଶେଷତଃ ପୁରୁଷସଙ୍ଗରେ ।—ତୁମ୍ଭେ ମୋସଙ୍ଗରେ ଯୁଦ୍ଧକୁ ଗଲେ ଲୋକେ ହସିବେ ।—ପିତାମାତା ମୋତେ ନିନ୍ଦାକରିବେ ।—ଲୋକେ ମଧ୍ୟ ଧିକ୍କାର କରିବେ ।—ପୁନଶ୍ଚ, ତୁମ୍ଭେ ଯୁଦ୍ଧକୁ ଗଲେ ଦେବତାମାନଙ୍କର ଭୀଷଣ ଗର୍ଜ୍ଜନ ଶୁଣି ମୂର୍ଚ୍ଛାଗତ ହୋଇଯିବ ।—ଯୁଦ୍ଧରେ ମୋର ବ୍ୟାଘାତ ଘଟିବ । ପ୍ରିୟତମେ ! ତୁମ୍ଭେ ପୁଣି କି ଯୁଦ୍ଧ କରିବ ? ତୁମ୍ଭର ସୁକୋମଳ ଶରୀରରେ ଯଦି ଗୋଟିଏ ମାତ୍ର ଶର ପତିତ ହୁଏ ତେବେ ତୁମ୍ଭେ ପ୍ରାଣ ହରାଇବ । ଯେଉଁ ଶରୀର ସାମାନ୍ୟ ପୁଷ୍ପାଘାତରେ ମଳିନ ହୋଇଯାଏ ସେକି ଶର, ଅସି, ବର୍ଚ୍ଛା ଆଦି ଶାଣିତ ଅସ୍ତ୍ରଶସ୍ତ୍ରର ଅଘାତ ସହ୍ୟ କରିବ ? କଦାଚ ସହ୍ୟ କରିବ ନାହିଁ । ପ୍ରାଣପ୍ରିୟେ ! ମୁଁ ଅବିଳମ୍ବେ ଯୁଦ୍ଧରୁ ଫେରିବି । କିଛି ଚିନ୍ତା କର ନାହିଁ । ତୁମ୍ଭେ ଗୃହରେ ରହି ମୋର ଜନକଜନନୀଙ୍କ ସେବା କରୁଥାଅ । ମୁଁ ଯେପରି ଯୁଦ୍ଧରେ ଜୟଲାଭ କରି ଶୀଘ୍ର ଫେରିବି ସେବିଷୟରେ ଦେବାଧିଦେବ ମହାଦେବଙ୍କୁ ପ୍ରାର୍ଥନା କର ।

ଇନ୍ଦୁ— ( କ୍ରନ୍ଦନସ୍ୱରେ ) ପ୍ରାଣନାଥ ! ମୁଁ ନିଶ୍ଚୟ ଆପଣଙ୍କ ସଙ୍ଗରେ ଯୁଦ୍ଧକୁ ଯିବି । ମୁଁ ଆପଣଙ୍କ ସଙ୍ଗରେ ଯୁଦ୍ଧକୁ ଗଲେ ଲୋକେ ନିନ୍ଦା କରିବେ ବୋଲି ଆପଣ ଡରୁଛନ୍ତି—ସେ କହିବ କିନ୍ତୁ ଆଉ—ଆମ୍ଭ ନିନ୍ଦା ଅମୃତାହେ । ଅପଣ କହୁଁଛନ୍ତି ମୁଁ ଯୁଦ୍ଧ ଦେଖି ମୂର୍ଚ୍ଛା ଯିବି, କଦାଚ ସେପରି ମୋର ହେବ ନାହିଁ । ମୁଁ ବୀରରମଣୀ; ମୋତେ ଥରେ ସଙ୍ଗରେ ନେଇ ମୋର ଯୁଦ୍ଧବିଦ୍ୟା ପରୀକ୍ଷା କରନ୍ତୁ । ଯୁଦ୍ଧରେ ମୁଁ ଅପଣଙ୍କ ସମ୍ମୁଖରେ ପ୍ରାଣ ହରାଇଲେ ମୋର ସଦ୍ଗତି ଅଛି । ଯେଉଁ ରମଣୀ କୁଳରେ ଜନ୍ମଗ୍ରହଣ କରି ସୀତାଦେବୀ ରାବଣକୁ ଭୟ ଦେଖାଇଥିଲେ ଏବଂ ସହସ୍ରମୁଖୀ

ରାବଣଙ୍କୁ ବଧ କରିଥିଲେ ମୁଁ ସେହି ରମଣୀ କୁଳରେ ଜନ୍ମ ଲାଭ କରିଛି । ମୋଠାରେ ଅବଶ୍ୟ ଶାରତ୍ୱ ଅଛି—ସଙ୍ଗରେ ନେଲେ ସବୁ ଜାଣିପାରିବେ । ସୀତା, ଦମୟନ୍ତୀ ପ୍ରଭୃତି ରମଣୀମାନେ ସ୍ୱାମିଙ୍କ ସହଗାମିନୀ ହୋଇଥିଲେ । ତାଙ୍କର ସ୍ୱାମିମାନେ ନିର୍ଭୟରେ ତାଙ୍କୁ ସଙ୍ଗରେ ନେଇଥିଲେ । ଅପଣ କାହିଁକି ମୋତେ ସଙ୍ଗରେ ନେବାକୁ ଭୀତ ଓ ଲଜ୍ଜିତ ହେଉଛନ୍ତି ? ମୁଁ ଅପଣଙ୍କୁ ଛାଡି ବଞ୍ଚିପାରିବି ନାହିଁ । ଏହା ଅପଣ ଜାଣି ଶୁଣି ମଧ୍ୟ ମୋତେ ସଙ୍ଗରେ ନେବାକୁ ଭୟ ଓ ଲଜ୍ଜା କରୁଛନ୍ତି ? ସ୍ୱାମୀ ସଙ୍ଗରେ ସ୍ତ୍ରୀ ଯିବ ଏଥିରେ ଲଜ୍ଜା ଭୟ କଅଣ ?

ବୃତ୍ର— ପ୍ରିୟେ ! ତୁମ୍ଭେ ଯାହା କହିଲ ମୁଁ ତାହା ବିଶଦରୂପେ ବୁଝିପାରିଛି । ମୁଁ ଯୁଦ୍ଧକୁ ଯାଉଛି—ପିତା ମାତାଙ୍କ ଅଶ୍ରୁ ମୋଚନ କରାଇବ ବିଷୟରେ ଆଉ କେହି ନାହିଁ । ତୁମ୍ଭଙ୍କୁ ଦେଖିଲେ ସେମାନେ କଥିତ୍ ସାନ୍ତ୍ୱନା ଲାଭ କରିବେ । ଏଣୁ ମୁଁ ତୁମ୍ଭଙ୍କୁ କହୁଛି ତୁମ୍ଭର କେବେ ଯୁଦ୍ଧକୁ ଯିବା ଉଚିତ ନୁହେ । ତୁମ୍ଭେ ଥାଅ—ମୁଁ ଅଳ୍ପଦିନ ମଧ୍ୟରେ ଫେରିବି । ଯୁଦ୍ଧକୁ ଯିବା ବ୍ୟତୀତ ଯେବେ ତୁମ୍ଭର ଆଉ କିଛି ପ୍ରାର୍ଥନା ଥାଏ କହ ପୂର୍ଣ୍ଣ କରିବି । ମୁଁ ଯେତେବେଳେ ପ୍ରତିଜ୍ଞାବଦ୍ଧ ନିଶ୍ଚେ ଯୁଦ୍ଧକୁ ଯିବି । ତୁମ୍ଭଙ୍କୁ ନ କହି ଗଲେ ତୁମ୍ଭେ ମନରେ ଦୁଃଖ ଅନୁଭବ କରନ୍ତ ତେଣୁ ତୁମ୍ଭଙ୍କୁ କହିବାକୁ ଅସିଲି । ଅଶ୍ରୁରେ କୌଣସି କାର୍ଯ୍ୟରେ ଗୃହରୁ ବହିର୍ଗତ ହେଲେ ନିଶ୍ଚେ ଅଶୁଭ ଘଟିଥାଏ । ପ୍ରିୟ ତମେ ! ତୁମ୍ଭେ ମୋର ଏ ଶୁଭକାର୍ଯ୍ୟରେ ଅଶୁଭ ଘଟାଅ ନା । ମୁଁ ଅଳ୍ପଦିନରେ ଫେରିବ । କିଛି ଚିନ୍ତା କର ନା ।

ଇନ୍ଦ୍ର— ପ୍ରାଣନାଥ ! ତୁମ୍ଭଙ୍କୁ ମୁଁ ରକ୍ଷିପାରିଲି ନାହିଁ । ହେଉ ନାଥ ! ଯାଉନ୍ତୁ ।—( ସ୍ୱଗତଃ ) ଓହୋ ! ଧୈର୍ଯ୍ୟ ଧର ହେଉ ନାହିଁ । ମନ ! ଧୈର୍ଯ୍ୟଧର । ମୁଁ ଯେତେ କହିଲେ ମଧ୍ୟ ପ୍ରାଣନାଥ ମୋର ମନା ଶୁଣିଲେ ନାହିଁ । ଆଉ କି ମାନିବେ ? ନା—ମନ ଧୈର୍ଯ୍ୟ ଧର । ପ୍ରାଣନାଥ ! ମୋର ଗୋଟିଏ ପ୍ରାର୍ଥନା ଅଛି ।

ବୃତ୍ର— କି ପ୍ରାର୍ଥନା କହ ।

ଇନ୍ଦୁ— ଶଚୀଦେବୀ ବନ୍ଦିଦରେ ଥାଇଁ ଭାରି କଷ୍ଟ ଅନୁଭବ କରୁଛନ୍ତି, ସେ ମୋ ପାଖରେ ରହିଲେ ଭଲ ହୁଅନ୍ତା ।

ରୁଦ୍ର— ଅଚ୍ଛା ହେଉ ମୁଁ ଯାଉଛି—ତୁମ୍ଭେ ପରମଶାନ୍ତି ଲାଭ ପୂର୍ବକ କାଳଯାପନ କରୁଥାଅ । ମୁଁ ଶୀଘ୍ର ଫେରିବି । ( ନେପଥ୍ୟେ ରଣ-ବାଦ୍ୟ ଶୁଣି ) ପ୍ରିୟେ ! କାଳଭଦ୍ର ଓ ସୁନ୍ଦନାପୁର ସେନାପତି ଦ୍ୱୟ ଏବଂ ସୈନ୍ୟମାନେ ବାହାରଲେଣି । ମୁଁ ଯାଉଛି । ଆଉ ବିଳମ୍ବର ପ୍ରୟୋଜନ ନାହିଁ । ( ପ୍ରସ୍ଥାନ । )

ଇନ୍ଦୁ— ( ସ୍ୱଗତଃ ) ମନଟା ଭାରି ଖାଲି ହେଉଛି । ସତେ ପ୍ରାଣେଶ୍ୱର ଯୁଦ୍ଧରେ ଜୟଲାଭ କରି ଫେରିବେ ? ଶୀଘ୍ର ଫେରନ୍ତୁ ।— ଦେବାଧିଦେବ ମହାଦେବ ! ସକଳ ତୁମ୍ଭର ଇଚ୍ଛା ।—ମୋ ସ୍ୱାମିଙ୍କର ମଙ୍ଗଳବିଧାନ କର । ତୁମ୍ଭ ବିନା ଏ ଅବଳାର ଆଉ ଦୁଃଖ-ହର କିଏ ଅଛି ?

( ଶଚୀଦେବୀଙ୍କର ପ୍ରବେଶ । )

କିଏ ଦେବି ! ଆସନ୍ତୁ ।—ଏଠାରେ ବସନ୍ତୁ ।—
( ଆସନ ପ୍ରଦାନ )

ଶଚୀ— ମା ! ଏପରି ବିଷଣ୍ଣ ଦେଖା ଯାଉଛ ନାହିଁକି ? ମୁଁତ କେବେ ଏପରି ତୁମ୍ଭଙ୍କୁ ଦେଖି ନାହିଁ ।

ଇନ୍ଦୁ— ଦେବି ! କିଶାଦର କଥା ପଚାରୁଛ ସ୍ୱାମୀ ଆଜ ଯୁଦ୍ଧକୁ ଗଲେ । ମୋର ମନା ସେମାନେ ନାହିଁ । ବର୍ତ୍ତମାନ ମୋର ମନ ବଡ଼ ବ୍ୟାକୁଳ ହେଉଛି ।

ଶଚୀ— କିଛି ଚିନ୍ତା କର ନାହିଁ ।

( ଝିଣ୍ଟିଲର ପ୍ରବେଶ । )

ଝି— ( ଖଟେଇ ) କିଛି ଚିନ୍ତାକର ନାହିଁ, ଭାରିତ କହିଜାଣେ ତୋତେ କିଏ ଡିହିଲା ନେ, ଏଠିକି ଆସିଲୁ ? ଯା ପଳା— ନାହିଁତ ମାଡ଼ ଖାଇବୁ ।

ଇନ୍ଦୁ— ମାଗଃ ! ଦେବୀଙ୍କ ଉପରେ ଏତେ ରାଗ କାହିଁକି ?

ଝି— ( ଖଟେଇ ) ଦେବୀଙ୍କ ଉପରେ ଏତେରାଗ କାହିଁକି ?—କି ଦେବୀଲୋ—ଦେବୀ ଗୋଟା କଅଣ ମ ? (ଦାନ୍ତରଗଡ ) ଦାସୀ— ଦାସୀ—ଦାସୀ । ସେଇଠାକୁ କାହିଁକି ଅଣି ପାଖରେ ବସାଇଛୁ ?

ଶଚୀ— ( ସ୍ୱଗତଃ ) ମାଲୋ ! କି ଦାନ୍ତ କାମୋଡ଼ା ! ମୋତେତ ବଡ଼ ଡ଼ର ମାଡ଼ୁଛି ।

ଇନ୍ଦ— ମାତଃ ! ସ୍ୱଗ ଛାଡ଼ିଲୁ ନାହିଁ । ତାଙ୍କ ଯୋଗୁଁ ମୁଁ ଧୈର୍ଯ୍ୟ ଧରି ରହିଛି । ନାହିଁତ ଏତେବେଳକୁ ପ୍ରାଣ ଯାଇ ସାରନ୍ତାଣି ।

ଶ୍ରୀ— କଅଣ ? ସେଇଠା ଯୋଗୁ ତୋର ପ୍ରାଣ ଅଛୁ ? କଅଣ ଗୋଡ଼ହାତ ଚପାଚପି କରି ଦେଉଛ କି ?

ଇନ୍ଦ— ସେଥିପାଇଁ ତ ଦାସୀମାନେ ଅଛନ୍ତି । ଦେଖା ହୋଇ ସେ ମୋର ଗୋଡ଼ ଚପି ଦେବେ ! ଏକଥା ଆପଣ ଆଉ କହିବେ ନାହିଁ ।

ଶ୍ରୀ— ସର୍ବନାଶ ! ସର୍ବନାଶ ! ଜଲେ ! ତୁ କଅଣ ଅମ୍ଭ କୁଳରେ କଳଙ୍କ ଲଗାଇବୁ କି ? ପୁଅ ମୋ'ର ତୋ ସକାଶେ ଯେ, ଯଦି ନହି ନ ଥିଲେ ଏତେବେଳକୁ ତୋ ଦେକ ମୋଡ଼ି ଦେଇ ସାରନ୍ତିଣି । ରହ—ରହ—ପୁଅ ଆସୁ ।

ଇନ୍ଦ— ଭଲ ହେଲା ।—ଏ କଥାକୁ ଯଦି ଆପଣ ଗୁରୁତର ଦୋଷ ମନେ କରନ୍ତି ତେବେ ଆପଣ ଦଣ୍ଡ ଦିଅନ୍ତୁ । ସେଥିପାଇଁ ମୋ ମନରେ ଲେଶମାତ୍ର ଦୁଃଖ ହେବ ନାହିଁ ।

ଶ୍ରୀ— ( ଗତେଇ ) ସେଥିପାଇଁ ମୋ ମନରେ ଲେଶମାତ୍ର ଦୁଃଖ ହେବ ନାହିଁ ।— ( ଦାନ୍ତକାମୋଡ଼ ) ରହ—ରହ— ଦେଖିବୁ ! ( ପ୍ରସ୍ଥାନ । )

ଶଚୀ— ( ସ୍ୱଗତଃ ) ଆହା ! ମୋ ସକାଶେ ଇନ୍ଦୁବାଳା କେତେ ଗାଳି ଶୁଣିଲା ! ମା ଲୋ ! କି ଦାନ୍ତ କାମୋଡ଼ା ! ମୋତେ ତ ଭାରି ଡର ମାଡ଼ିଲା । ( ପ୍ରକାଶ୍ୟେ ) ମା ! ମୋ ସକାଶେ ଏତେ ଗାଳି ଶୁଣିଲ କାହିଁକି ?

ଇନ୍ଦ— ସେ ହେଉ ମୋ ମନରେ କୌଣସି ଦୁଃଖ ନାହିଁ । ଚାଲନ୍ତୁ ।—ଉଦ୍ୟାନକୁ ଯିବା ।

ଶଚୀ— ହେଉ ଚାଲ । ( ସମସ୍ତଙ୍କ ପ୍ରସ୍ଥାନ )

ଅପ୍ସରା କୁମାରୀମାନଙ୍କ ପ୍ରବେଶ ଏବଂ ନୃତ୍ୟ ଓ ଗୀତ ।

ଗୀତ ।

"ଗନ୍ଧର୍ବ ଗଳ୍ପକଥା" ବୃତ୍ତରେ )

କେତେ ଆଶାକୁ ଏ ମନେ ରେ ସଜନ !

କେତେ ଆଶାକୁ ଏ ମନେ ।

ଆଶାକୁ ପୂରଣ କୁଏ ସଦାକାଳେ

ସଦା ଧରିଥାନ୍ତି ଜନେ ରେ । ସଦ ।

ଦଣ୍ଡାସ୍ତୁ ଅଭନସ୍ତୁ ।

ଆଶାଯ୍ତ୍ରୀ ସେ ଦେତ୍ୟ. ବୃହାସୁର ସୁତ
ଆଶାବଳେ ଶଲାରଣେ ।
ଆଶାରକ୍ଷି ହୃଦେ କଷ୍ଟସ୍ତୁ ସେ ଯୁବେ
ନାଶିବ ଅବ୍ରତଭଗଣେ । ୧ ।
ଆଶାର ଆଳୟେ କଣେ ଜୀବନ୍ୟେ
ବସିଛନ୍ତି ଅନୁଷଣେ ।
କ ଧନୀ, ନିର୍ବନେ କ ବଙ୍କ, ଅଜ୍ଞାନେ
ରହିଛନ୍ତି ଆଶାଧୀନେ । ୨ ।

ଯବନିକାପତନ ।





# ତୃତୀୟ ଅଭିନୟ ।

ପ୍ରଥମ ଦୃଶ୍ୟ—ରଙ୍ଗଭୂମି ନିକଟବର୍ତ୍ତୀ ପ୍ରାନ୍ତର ।

( ଇନ୍ଦ୍ର, ବରୁଣ, କୁବେର ଓ ଯମ ଅଦରଣଦେଶେ ଦଣ୍ଡାୟମାନ )

ଇନ୍ଦ୍ର— ( ବଜ୍ର ଦେଖାଇ ) ଦେଖ ଏହି ବଜ୍ରେ ସବେ ମହର୍ଷି ଦଧୀଚି
ତେଜିଲେ ଯା ପାଇଁ ପ୍ରାଣ ଅକାତରଚିତ୍ତେ ।

ବରୁ— ଦେଖିଁ ଦେବ ! ଏ ବଜ୍ରର କପର ମାହାତ୍ମ୍ୟ ?

ଇନ୍ଦ୍ର— ଚ୍ହିଁ ପରୀକ୍ଷା ଏବାର ? ପରୀକ୍ଷାରେ ନାହିଁ
ପ୍ରୟୋଜନ, ନିକ୍ଷେପିଲେ ଏହା ଅବଶ୍ୟ ହେ
ହେବ ସମସ୍ତ ଦଗ୍ଧ,—ପୁଣି ଜନପୁର ।
ନ ରହିବା ଏ ସ୍ଥଳରେ କେହି ସୁରଗଣ !
କହିଅଛି ବିଶ୍ୱକର୍ମା ଶିଳ୍ପୀଚୂଡ଼ାମଣି ।

କୁବେର—ଧନ୍ୟ ସେହି ଋଷି ଧନ୍ୟ, ବିଶ୍ୱକର୍ମା ଶିଳ୍ପୀ;
ଏପର ମାହାତ୍ମ୍ୟ ଦେବ ! ଅଛେ ଏ ବଜ୍ରର ?—
ଜନପୁର ଯାକ ଦଗ୍ଧ କରିବ କ୍ଷଣକେ ?
ହେତୁ ବିଧାନ ଭବେ ଅଟଇ ବିଧିର

ଯମ— ସଂହାରର ଭାର ଥାଇ ମୋହର ହସ୍ତରେ
ନ ହେଲା ସେ ଦୈତ୍ୟ ହତ ମୋର କାଳଦଣ୍ଡେ,
ବାସ୍ତବରେ ଚ ଅଦ୍ଭୁତ ସେ ବିଧିର ସୃଷ୍ଟି ।
ତଏ କେବେ କରିଥିଲି ମୋ ପାଶେ ଗରବ ?

ଇନ୍ଦ୍ର— ଜୟନ୍ତକୁମର ମୋର ଅଗ୍ନିଦେବ ସଙ୍ଗେ
କରିଥିଲି ଦୈତ୍ୟଦୁର୍ଗ ଅବରୋଧ ଯାଇଁ
ମିଳିଲାନି ନାହିଁ ତାଙ୍କ ସଂଗ୍ରାମ ସମ୍ବାଦ ।

ବରୁଣ— ମିଳିବ ଅବଶ୍ୟ ଅଶୁ ନହନ୍ତୁ କାତର;
ଦିଗ୍ବିଜୟୀ ସେ ଜୟନ୍ତ ଯାଇଛନ୍ତି ଦେବ !
ଅଗ୍ନିଦେବ ସଙ୍ଗେ ଯେବେ ନାହିଁ ତାଙ୍କ ଭୟ ।

ଇନ୍ଦ୍ର— ବଡ଼ଇ ପ୍ରତାପୀ ବୃତ୍ର ପୁଣି ତା' ନନ୍ଦନ—
ରୁଦ୍ରପୀଡ଼ ବୃତ୍ରଠାରୁ ଅଟଇ ଅଧିକ ।

( ଅଗ୍ନିଦେବଙ୍କର ପ୍ରବେଶ ।)

ଅଗ୍ନି— ଦିଗ୍ବିଜୟୀ ରୁଦ୍ରପୀଡ଼ ହୋଇଛି ପ୍ରବିଷ୍ଟ
ଏବେ ସଂଗ୍ରାମଭୂମିରେ; ଶୁଣିଲୁ ସତ୍ୱର

ରଙ୍ଗଭୂମେ; ଅଗ୍ରସର ହୁଅ ଅବିଳମ୍ବେ
ସର୍ବ ଦେବଗଣ ! ଏବେ ବୀର ରୁଦ୍ରପୀଡ
କରୁଥିବ ଭୀମରଣ ଜୟନ୍ତଙ୍କ ସଙ୍ଗେ ।

ଇନ୍ଦ୍ର— କପର ଆସିଲ ଛାଡ଼ି ଏକାକୀ ତନୟେ
ମୋ'ର ରଙ୍ଗଭୂମିମଧ୍ୟେ ଅହେ ଅଗ୍ନିଦେବ !

ଅଗ୍ନି— ସଙ୍ଗେ'ଛନ୍ତି କାର୍ତ୍ତିକେୟ'ଛନ୍ତି ଦେବସେନା,
ନାହିଁ କିଛି ଭୟ ଚିନ୍ତା; ଚାଲନ୍ତୁ ସତ୍ୱର ।

ଇନ୍ଦ୍ର— ଯାଇଛନ୍ତି କାର୍ତ୍ତିକେୟ ନିଜେ ରଙ୍ଗଭୂମେ ?
ତେବେ ନାହିଁ କିଛି ଭୟ, ଚାଲ ହେ ବରୁଣ,
ଚାଲ ହେ କୁବେର, ଚାଲ ସର୍ବଭକ୍ଷ ଯମ,
ଯିବା ରଙ୍ଗଭୂମେ, ବୀର ରୁଦ୍ରପୀଡ ଅଗେ
ଅସିଛି ସଂଗ୍ରାମେ ଜାଣ, ଦେଖ ତା ପ୍ରତାପ ।

( କାର୍ତ୍ତିକେୟଙ୍କ ପ୍ରବେଶ )

ଇନ୍ଦ୍ର— କି ସମ୍ବାଦ ଶକ୍ତିପତି ! କହନ୍ତୁ ସତ୍ୱର,
ଥିଲି ମୁଁ ସନ୍ଦେଗ୍ରୁ ଅତି, ଫେଡ଼ନ୍ତୁ ଅଚିରେ ।

କାର୍ତ୍ତି— ପରାଜିତ ହେଲୁଁ ଆମ୍ଭେ ରୁଦ୍ରପୀଡ଼ ପାଶେ
ବାରମ୍ବାର ଦେବରାଜ ! କି କହିବି ମୁହିଁ
ଦୈତ୍ୟସୁତ ରୁଦ୍ରପୀଡ—ସମର କୌଶଳ ?
ଦେବାଙ୍କୁ ସେ ପରାଭବ ସ୍ୱର୍ଗଲୋକବାସିଙ୍କୁ,
ଜନ୍ମିଅଛି ଏହି ଭବେ, ଅଦ୍ଭୁତ ଆହବ
ତାର—ଅଦ୍ଭୁତ କୌଶଳ; ଜୟନ୍ତକୁମାର
କରୁ'ଛନ୍ତି ରଣ ସେହି ଦର୍ପିଜନ୍ମୀ ସଙ୍ଗେ;
କହୁଅଛି କର ଯୁଦ୍ଧ ଦେବ ପରାଭବ
ସର୍ବ ପୁରେ, ପୁରପତି ! ଆତର ଭୂମିଙ୍କୁ !

ଇନ୍ଦ୍ର— ହେଉ, ଅସ୍ତୁ, ଭୟ ନାହିଁ, ଦେଖିବା ତାହାର
ସମର କୌଶଳ ଅଜି; ଜାଣିଛି ବୀରେନ୍ଦ୍ର
ଜଣେ ଦାନବ ତନୟ ଏହି ଭବମଧ୍ୟେ ।

କାର୍ତ୍ତି— ଚାଲନ୍ତୁ ସତ୍ୱର ପୁରେ ! ଚାଲ ଦେବରାଜ !
ଏକାକୀ ଅଛନ୍ତି ରଣେ ଜୟନ୍ତକୁମାର ।

ଇନ୍ଦ୍ର—    ଚଲ ସର୍ବେ, ଚଲ ଯୁଦ୍ଧେ ! ନ କର ବିଳମ୍ବ
ଆଉ; ଅଛି ପରାକ୍ରମୀ ବୃତ୍ରର ତନୟ ।
ସମସ୍ତେ—ଚଲ ଯିବା ।

( ସମସ୍ତଙ୍କର ପ୍ରସ୍ଥାନ । )
ପଟ ପରିବର୍ତ୍ତନ ।

—○—

ଦ୍ୱିତୀୟ ଦୃଶ୍ୟ—ରଣଭୂମି ।

( ଇନ୍ଦ୍ର, ବରୁଣ, କୁବେର, ଅଗ୍ନି, ଯମ, ପବନ, କାର୍ତ୍ତିକେୟ ଏବଂ ଜୟନ୍ତ ପ୍ରଭୃତି ଯୁଦ୍ଧପାଇଁ ସୁ-ସଜ୍ଜିତ ହୋଇ ଯେ ଯାହା ସ୍ଥାନରେ ଦଣ୍ଡାୟମାନ )

ଇନ୍ଦ୍ର—    କାହିଁ ବୃତ୍ରର ତନୟ ବୀର ରୁଦ୍ରପୀଡ଼?
ଯମ—    ମରିବ ସେ କଷ୍ଟେ ଆଜ ଅସ୍ତ୍ର ବ ଦଣ୍ଡ୍ୟ !
ଅଗ୍ନି—    ମରିବ ନିଶ୍ଚୟ ଅମ୍ଭେ ଜାଣୁଛୁଁ ସରବେ,
କିନ୍ତୁ ନ୍ୟାୟଯୁଦ୍ଧେ ତାଙ୍କୁ ନ ପାରିବ ମାରି ।
କୁବେର—କି ଛାର ସେ ରକ୍ଷ ନ୍ୟାୟ ଯୁଦ୍ଧେ ବୈଶ୍ୱାନର !
ନ ପାରିବା ତାଙ୍କୁ ? କଷ୍ଟେ ଆଜ ହେବ ହତ ।
ପବନ— ଉଡ଼ାଇ ଦେବ ତାହାକୁ ପଡ଼ିବ ସେ ଯାଇଁ
ମନ୍ଦାକିନୀ ଜଳେ, କଷ୍ଟେ କନ୍ଦୁଅଛି ମୁହିଁ ।
ବରୁଣ—  ପାତାଳ ପୁରକୁ ତାଙ୍କୁ ଦେବ ପଦେ ଠେଲି
କି ଛାର ସେ ରୁଦ୍ରପୀଡ଼, ଅହେ ଅଗ୍ନିଦେବ !
ଦେଖିଛୁ ମୁଁ କେତେ କେତେ ରଥୀ ମହାରଥୀ ।
କାର୍ତ୍ତି—   ସେହି ହେତୁ ଦେବଧାମୁଁ ହୋଇ ବିତାଡ଼ିତ
ଭ୍ରମୁଅଛ ଇତସ୍ତତ; କାହିଁ ଥିଲା ତବ
ଗାରବ୍ୱ ହେ ସୁରେ ! କପାଁ ହେଲ ବା ପରାସ୍ତ ?

ଜୟନ୍ତ—  ସାମାନ୍ୟ କି ମଣିଅଛ ବରୁଣ, ପବନ !
ସେହି ରୁଦ୍ରପୀଡ଼ ବୀରେ; ଦେଖିଚ ଏପରି
ସେହି ବୀରେନ୍ଦ୍ର ବପୁ ? ଦେଖିବା ପ୍ରତ୍ୟକ୍ଷ
ତବ ବୀରେନ୍ଦ୍ର ଶେଖରେ ! କର ହେ ଅପେକ୍ଷା ।

( ନେପଥ୍ୟେ ରଣ ବାଦ୍ୟ । )

ଇନ୍ଦ୍ର— ବାଯିଲଣି ରଣ ବାଦ୍ୟ ଅସୁଅଛୁ ପର ।
ବୃତ୍ରର ତନୟ ? ପୁତ୍ରେ ! ଦେଖ ସବେ ଦେଖ ।
( ରୁଦ୍ର ପୀଡ଼, ସୁଜନାସୁର ଓ କାଳଭଦ୍ରର ପ୍ରବେଶ । )

ରୁଦ୍ର— ଅଳ୍ପ ଅଶା ସୁଜାତିର ! ବନ୍ଧୁଙ୍କାଙ୍କ ହୃଦେ
କର ତବ ସଙ୍ଗେ ଯୁଦ୍ଧ ହେବ ଧନ୍ୟ ହବେ;
ଘଟିଛୁ ସୁଯୋଗ ଆଜ ଅସ ସୁଜାଣର ।

ପବନ— ମୋତ୍ସ ସଙ୍ଗେ କର ଯୁଦ୍ଧ ପାରଲେ ତୁ ଜଣି
କରବୁ ପଶ୍ଚାତେ ରଣ ସୁଜାଶର ସଙ୍ଗେ ।

ରୁଦ୍ର— ହେଉ, ତୁମ୍ଭ କଥା ହେଉ, ଧର ଅସ୍ତ୍ର ବେଗେ ।
( ଉଭୟଙ୍କ ଯୁଦ୍ଧ ଓ ପବନଙ୍କ ପଳାୟନ । )

ରୁଦ୍ର— ଧିକ, ବୀର ହୋଇ ଦେଲ ପୃଷ୍ଠଭଙ୍ଗ ରଣେ !
ଆସ ପୁରେ ! ଅଉ ଅଛୁ ଶକତ କାହାର ।

ଅଗ୍ନି— ଅସ ବୀରେ ଦୈତ୍ୟସୁତ ! ଦେଖିବ ତୁମ୍ଭର
ସମର କୌଶଳ; ଆସ, ହେଲ ମୁଁ ପ୍ରସ୍ତୁତ ।
( ଉଭୟଙ୍କ ଯୁଦ୍ଧ ଓ ଅଗ୍ନିଙ୍କ ପଳାୟନ । )

କୁବେର— ଅଗ୍ନିଦେବ ପବନଙ୍କୁ ଦେଇ ଅପମାନ
ଇଚ୍ଛିଛୁ ତୁ ଦେବୁ ମୋତେ ? ଏହି ଗଦାବରେ
ନରଖରେ ଚୂର୍ଣ୍ଣି ତୋ'ର ମସ୍ତକ ଏକ୍ଷଣି ।

ରୁଦ୍ର— ହେଉ ତାହା, ଆସ, ଅସ, ଧନେଶ ବୀରେନ୍ଦ୍ର !
ଦେଖେଁ ତବ ବୀରତ୍ୱ ମୁଁ, ଧର ଅସ୍ତ୍ର ବେଗେ ।
( ଯୁଦ୍ଧ ଓ କୁବେରଙ୍କ ପଳାୟନ ; )

ଯମ— କାଳଦଣ୍ଡ ହସ୍ତେ ମମ ଦେଖ ଦୈତ୍ୟାଧମ !
ଏହିବାର ଯିବ ତୋର ଜନ୍ମେ ପ୍ରାଣ ବାୟୁ ।

ରୁଦ୍ର— ଦେଖିଲ ସଭଙ୍କ ଠାଣ, ଦେଖିବ ତୁମ୍ଭର;
ଧର ଅସ୍ତ୍ର ହେ ଶମନ ! ନ କର ବିଳମ୍ବ ।
( ଉଭୟଙ୍କ ଯୁଦ୍ଧ ଓ ଯମଙ୍କ ପଳାୟନ । )

ବରୁଣ— ଅରେ ଦୈତ୍ୟାଧମ ! ଦେବ ତୋତେ ଠେଲ
ଅଇ ପାତାଳ ପୁରକୁ; ତୋର ମୃତ୍ୟୁ ସନ୍ନିକଟ ।
( ଉଭୟଙ୍କ ଯୁଦ୍ଧ ଓ ବରୁଣଙ୍କ ପଳାୟନ । )

ରୁଦ୍ର— ଅସ ଅହ ନାକିନ୍ଦ୍ର ! ଦେଖିବୁ ବୀରତ୍ୱ

ତବ, ଦେଖିବୁ ପୁନଃ ଥରେ ସୁଜାଣିବ ।
କାର୍ତ୍ତି— ଆଚ୍ଛା ଦେଖ ; ( ଉଭୟଙ୍କ ଯୁଦ୍ଧ ଓ କାର୍ତ୍ତିକେୟଙ୍କ ପଳାୟନ )
ଜୟନ୍ତ— ନେଇଛୁ ବନ୍ଧନ କରି ସେଣୁ ମୋ ଜନକ,
ଦେବ ତାର ପ୍ରତିଫଳ ଥରେ ଦୈତ୍ୟାଧମ !
ବୃତ୍ର— ଦେଖିଛୁ ବୀରତ୍ୱ ତୋ'ର, ଦେଖିଛନ୍ତି ସବେ
ତପୋବନେ, ବୃଥା ଯାଦା କରୁ ଅଛ ଗର୍ବ,
ବଢ଼ମାଲେ ମୋତେ; ଅଚ୍ଛା ଦେଖେ ଥରେ ପୁନଃ ।
( ଯୁଦ୍ଧ ଓ ଜୟନ୍ତଙ୍କ ପଳାୟନ )
ଇନ୍ଦ୍ର— ଧନ୍ୟ ତୋ ବୀରତ୍ୱ ଧନ୍ୟ ଧନ୍ୟ ରୁଦ୍ରପୀଡ଼ ।
ଦେଲି ତୋତେ ପୁରସ୍କାର, ଯାଅ ଏଥୁଁ ଏବେ;
ଅକାରଣେ କପାଇଁ ତୁ ମରିବୁ ଏଠାରେ ?
ନ ମାରିବ ତୋତେ, କଲୁ, ମାରିବ ନିଶ୍ଚୟ
ପିତାକୁ ତୋହର; ଯାଅ, ଛାଡ଼ିଦେଲି ତୋତେ ।
ରୁଦ୍ର— କାହିଁ ଗୃହେ ପୁରସ୍କାର ମୁଁ ହେ ଶଚୀନାଥ !
ଆସ କର ଯୁଦ୍ଧ, ମଲେ—ମରିବ ସଙ୍ଗରେ
ଯୁଦ୍ଧେ ମଲେ ଧନ୍ୟ ହେବ ଇହ—ପରକାଳେ;
ବୀର ହୋଇ ଗଲେ ଏଥୁଁ ନରକ ନିଶ୍ଚୟ;
କାହିଁ ଚନ୍ତା ମୋର, ଆସ, ଧର ଅସ୍ତ୍ର ବେଗେ ।
( ଯୁଦ୍ଧ ଓ ଇନ୍ଦ୍ରଙ୍କର ପରାଜୟ )
ଇନ୍ଦ୍ର— ଧନ୍ୟ ଧନ୍ୟ ଦୈତ୍ୟ ସୁତ ! ଧନ୍ୟ ତୋ ବୀରତ୍ୱ ।
( ସଙ୍ଗରେ ଦେବଗଣଙ୍କର ପ୍ରବେଶ )
ଜୟନ୍ତ— ( ଇନ୍ଦ୍ରଙ୍କୁ ) ଏକା ନ ପାରିବା କେହ ଯୁଦ୍ଧରେ ଏହାଙ୍କୁ,
ସବେ ମେଳି ମାରିବା ଏ ଦୈତ୍ୟାଧମେ ପିତଃ !
( ସମସ୍ତଙ୍କର ଏକକାଳୀନ ଶର ନିକ୍ଷେପ )
ବୃତ୍ର— ଛି ଛି ସୁର କରୁଅଛ କଲି ଅନ୍ୟାୟ—ସମର ।
ଜୟନ୍ତ— ଶଠ ସଙ୍ଗେ ନ୍ୟାୟାନ୍ୟାୟ ନ ଥାଏ ବିଚାର ।
ବୃତ୍ର— ଦେଖ, ତୁମ୍ଭେ ମୁଁ ବାଳକ ସେଥିପାଇଁ ସୁରେ !
ସୁନନ୍ଦ— ଶର ଯୁଦ୍ଧେ ସୁନିପୁଣ ତୁମ୍ଭେ ପ୍ରବଞ୍ଚକ !
ଥରେ ମୁଁ ଦେଖିବି ତବ ଅସି ଯୁଦ୍ଧ ଏବେ ।
ପବନ— ଏହି ଅସି ଆଘାତରେ ଯିବ ତୋର ପ୍ରାଣ,

ଅରେ ରେ ସୁନ୍ଦକାସୁର କାହିଁ ପଳାଉଣ ।
( ଯୁଦ୍ଧ ଓ ସୁନ୍ଦକାସୁରର ପତନ )

ଜୟନ୍ତ— କାଳଭଦ୍ର ! ବଞ୍ଚିଅଛୁ ତବ ସଙ୍ଗେ ଏବେ
ମନେ ମୋର ଯୁଦ୍ଧ-ତୃଷ୍ଣା, ଆସ ଆସ ବୀର !

କାଳ— ଚିନ୍ତା ନାହିଁ ଇନ୍ଦ୍ର ସୁତ ! ଧର ଅସ୍ତ୍ର ବେଗେ,
ହେଲି ମୁଁ ପ୍ରସ୍ତୁତ ଯୁଦ୍ଧ ଅସ ହେ ବୀରେନ୍ଦ୍ର !
ଏବେ ଥିର ପରାଜୟ ଲଭ ରେ ନିର୍ଲ୍ଲଜ !
ମୋହ ସଙ୍ଗେ ବଳାଇଛୁ ଯୁଦ୍ଧରେ ପିପାସା ?
ଯିବୁ ଆଜ ଯମାଳୟେ ଜାଣେ ମୁଁ ଜୟନ୍ତ !
( ଯୁଦ୍ଧ ଓ କାଳଭଦ୍ରର ପତନ । )

ଇନ୍ଦ୍ର— ସର୍ବେ ହେଲେ ହତ ଏହି ରଣ-ଚଣ୍ଡୀ—ପୀଠେ,
ଏକାକୀ ଅଛୁରେ ତୁହି ରୁଦ୍ରପୀଡ଼ ବୀର !
କହୁଅଛୁ ଏବେ ତୋତେ ତେଜ ତୁ ସମର ।

ରୁଦ୍ର— ଯିବି ନାହିଁ ଶଚୀନାଥ ! କେବେହେଁ ଏ ସ୍ଥଳରୁ;
ଧର ଅସ୍ତ୍ର ସୁରପତି ! ହେଲି ମୁଁ ପ୍ରସ୍ତୁତ ।

ଇନ୍ଦ୍ର— ସମ୍ଭାଳ ତୁ ଏହି ଶର ଜାଣିବି ମୁଁ ତୋତେ
କେମନ୍ତ ବୀର ତୁ ଅଟୁ ଦୈତ୍ୟ କୁଳେ ଜଣେ ।

ରୁଦ୍ର— ଅଚ୍ଛା ହେଉ । ( ଯୁଦ୍ଧ ଓ ଇନ୍ଦ୍ରଙ୍କ ଶରକୁ ଉଡ଼ାଇ ଦେବାର )

ରୁଦ୍ର— ଦେଖ ସୁରପତି ! ହେଲି ଉଡ଼ାଇ ସେ ଶର,
ଦେଖେ ମୁଁ କେମନ୍ତ ଶର ଅଉ ଅଛୁ ତବ ?

ଇନ୍ଦ୍ର— ଦେଖିବୁ ଉଡ଼ାଇ ଦେବୁ କେମନ୍ତ ଏ ଶର ।
( ଯୁଦ୍ଧ ଓ ଇନ୍ଦ୍ରଙ୍କ ଶରକୁ ଉଡ଼ାଇ ଦେବାର । )

ରୁଦ୍ର— ଦେଲଇ ଉଡ଼ାଇ ସେହି ଶର ସୁରପତି !

ଇନ୍ଦ୍ର— ଧନ୍ୟ ଧନ୍ୟ ବୀର ତୁହି ଏ ସଂସାର ମଧ୍ୟେ,
ଦେଖି ନାହିଁ ତୋହ ପ୍ରାୟ ବୀର ରୁଦ୍ର ପୀଡ଼ !

ରୁଦ୍ର— କୃତାର୍ଥ ମୁଁ ହେଲି ଆଜ ଶତ୍ରୁ ହୋଇ ଇନ୍ଦ୍ର !
ଯାହା ପ୍ରଶଂସିଲ ମୋତେ, ଧନ୍ୟ ହେଲି ଆଜ ।

ଇନ୍ଦ୍ର— କାର୍ଯ୍ୟେ ଶତ୍ରୁ ମିତ୍ର ମୋର ନୁହଁ ଥାଏ ବଶ୍ୟର
କେବେ, ବୀର ଚୂଡ଼ାମଣି ! ଶତ୍ରୁ ହୁଅ ପଛେ
ଦେଖି ନାହିଁ ତବ ପ୍ରାୟ ଜଣେ ବୀର କେବେହେଁ;
କି ପ୍ରାର୍ଥନା ତବ ? କହ, କରିବି ପୂରଣ ।

ବୃତ୍ର— ବଢ଼ୁହିଁ ପ୍ରାର୍ଥନା ଆଉ ନାହିଁ ତବ ପାଶେ,
ଜାଣୁଛି ମୁଁ ହେବ ହତ ତୁମ୍ଭ ଏବଂ ହସ୍ତେ;
କିନ୍ତୁ ମୋର ମୃତଦେହ ଅକ୍ଷୟ୍ଣି ଭାବରେ
କରିବ ପ୍ରେରଣ ମୋର ପିତାମାତା ପାଶେ,

ଇନ୍ଦ୍ର—ଅବଶ୍ୟ କରିବ ପୂର୍ଣ୍ଣ ନ ହୁଅ କାତର ।
ଏହିବାର ସମ୍ଭାଳ ଏ ଶର ରୁଦ୍ରପୀଡ଼ ।
( ଯୁଦ୍ଧ ଓ ଶର ପ୍ରକ୍ଷିପ୍ତ ହୋଇ ରୁଦ୍ରପୀଡ଼ ଦେହରେ ବିଦ୍ଧ )

ବୃତ୍ର—( ବସିପଡ଼ି ) ହା ପିତଃ ! ହା ମାତଃ ! ହା ପ୍ରାଣାଧିକା ଇନ୍ଦୁବାଳା !! ପିତଃ ! ସକ୍ରୋଧ ହୃଦୟରେ ଏ ଅଧମ ସୁତକୁ ବିଦାୟ ଦେଇଥିଲ । ହାୟ ! ହାୟ ! ପିତଃ ! ଯେତେବେଳେ ମୁଁ ଜୟପତାକା ଉଡ଼ାଇ ତୁମ୍ଭ ନିକଟରେ ଉପସ୍ଥିତ ହୋଇ ଥାଆନ୍ତି ସେତେବେଳେ ତୁମ୍ଭେ କ ଆନନ୍ଦ—ଧାରାବାରରେ ସନ୍ତରଣ କରିଥାଆନ୍ତ ! ହାୟ ! ପିତଃ ! କିନ୍ତୁ ଦୈବ ତାହା କରାଇ ଦେଲା ନାହିଁ । ହାୟ ! ହାୟ ! ପିତଃ ! ମୋର ମୃତ୍ୟୁସମ୍ବାଦ ଅବଗତ ହୋଇ ତୁମ୍ଭେ କ ସ୍ଥିର ହୋଇ ରହିବ । ପିତଃ ! ନିଶ୍ଚୟ ତୁମ୍ଭେ ମଧ୍ୟ ପୁନର୍ବାର ସୁରମାନଙ୍କର ଦର୍ପ ଦଳନ କରିବାକୁ ରଙ୍ଗଭୂମିରେ ଅବତୀର୍ଣ୍ଣ ହେବ । କିନ୍ତୁ ହାୟ ! ପିତଃ ! କ ହେବ ? ଜୟ ଲକ୍ଷ୍ମୀ ଆଉ ଅସୁରଠାରେ ସୁପ୍ରସନ୍ନା ହେବେ ନାହିଁ । ହା ମାତଃ ! ହାୟ ! ଏ ଅଧମ ସୁତକୁ ତୁମ୍ଭେ ବିଦାୟ ଦେଇ ନ ଥିଲ + ମାତଃ ଯେତେବେଳେ ତୁମ୍ଭେ ମୋର ମୃତ୍ୟୁ—ସମ୍ବାଦ ଶୁଣିବ ତାହେଲେ କ ପ୍ରାଣଧରି ରହିବ ? ହାୟ ! ହାୟ ! ମାତଃ ! କିନ୍ତୁ ଏ ଅଧମସୁତ ମୃତ୍ୟୁକାଳରେ ତୁମ୍ଭର ଶ୍ରୀ ଚରଣ ଦେଖି ପାରିଲା ନାହିଁ । ମୋର ସେ ସୌଭାଗ୍ୟ ଥିଲେ ଅବଶ୍ୟ ଦେଖିଥାଆନ୍ତି ।—କିନ୍ତୁ ତାହା ନାହିଁ । ହା ପ୍ରାଣପ୍ରିୟେ ! ହା ଇନ୍ଦୁବାଳା ! ହାୟ ବିଧୁମୁଖି ! ତୁମ୍ଭକଥା ମନେ ହେଲେ ହୃଦୟ ଶତଧା ବିଦୀର୍ଣ୍ଣ ହୁଏ । ହାୟ ! ପ୍ରିୟେ ! ଆଉ କ ତୁମ୍ଭେ ପ୍ରାଣଧରି ରହିବ ? ହାୟ ! ହାୟ ! ପ୍ରାଣାଧିକେ ! ଆସିଲବେଳେ କେତେ ବ୍ୟାକୁଳ ହୋଇଥିଲ !—ପ୍ରିୟେ ! ତୁମ୍ଭେ ସତୀ—ତୁମ୍ଭେ ପରମା ସାଧ୍ୱୀ ପତିବ୍ରତା—ମୋର ଅମଙ୍ଗଳାଶଙ୍କା ପୂର୍ବରୁ ତୁମ୍ଭଙ୍କ ଜଣା ପଡ଼ିଥିଲା । ( ସାରଥୀକୁ ଅନାଇ ) ହାୟ ! ହାୟ ! ସାରଥେ ! ମୋର ମୃତଶରୀର ନେଇ ପିତାମାତାଙ୍କ ସମ୍ମୁଖରେ ଦେବ ! ହାୟ ! ସେମାନେ

ଆଉ ଥରେ ମାତ୍ର ମୋର ଶରୀର ଦେଖିଥା'ନ୍ତୁ । ହାୟ ! ଗଲାପ୍ରାଣ —
ଓ ହୋ ! ଏ କଷ୍ଟ !—ହାୟ ! ଏ କଷ୍ଟ—ହା—ୟ—।—
( ମୃତ୍ୟୁ )

ଇନ୍ଦ୍ର— ଗଲା ଏବେ ବୃତ୍ର ସୁତ ଶମନ ସଦନେ
ଯାଅ ନେଇ ସାରଥୀ ହେ ମୃତପିଣ୍ଡ ତାର
ହେ କୁବେର ! ହେ ପବନ ! ପୁଷ୍ପକ ବିମାନେ
ଏହି ବୀର ତନୟଙ୍କୁ ଦିଅ ହେ ବସାଇ;
ନେଇଯାଉ ତା' ସାରଥୀ ବୃତ୍ର ରକ୍ଷଃ ପାଶେ;
କରୁଛି ପ୍ରାର୍ଥନା ମୋତେ ବୀର ଚୂଡ଼ାମଣି ।

( କୁବେର ଓ ପବନଆଦି ପୁଷ୍ପକ ବିମାନରେ ରୁଦ୍ରପୀଡଙ୍କୁ ବସାଇ ସାରଥିଙ୍କୁ ପ୍ରଦାନ ଓ ତାଙ୍କୁ ନେଇ ସାରଥୀର ପ୍ରସ୍ଥାନ । )

ପବନ— ପୁଷ୍ପକ ବିମାନଗଲା ଘୋର ରକ୍ଷଃ ସୁତ !

ଇନ୍ଦ୍ର— ସାମାନ୍ୟ କି ମଣିଅଛ ପ୍ରଭଞ୍ଜନ ! ତାଙ୍କୁ ?
ସାମାନ୍ୟ ସେ ହୋଇଥିଲେ ହୁଅନ୍ତ ପରାସ୍ତ
ତୁମ୍ଭେ କାତ ହୋଇ ପୁରକୁଳେ ? ଅସାମାନ୍ୟ
ଅଟେ ସେବେ ଦିଗ୍ବିଜୟୀ ସେହି ଦୈତ୍ୟ ସୁତ;
ପ୍ରାର୍ଥନା ସେ କରିଥିଲା ମୋତେ, ଏଣୁ ଦେଲି
ପୁଷ୍ପକ—ବିମାନ; ଯାଉ ବୃତ୍ର ସନ୍ନିଧାନେ;

ସମସ୍ତେ— ଚାଲ ସର୍ବେ ଏବେ ପୁରେ ବିଶ୍ରାମ ଶିବରେ
ଚାଲ ସର୍ବେ । ( ସମସ୍ତଙ୍କର ପ୍ରସ୍ଥାନ )
( ଅଦୃଷ୍ଟ କୁମାରମାନଙ୍କ ପ୍ରବେଶ ଏବଂ ନୃତ୍ୟ ଓ ଗୀତ )
"କାଞ୍ଚନମଣି ( ଧନ ) ଏ ଯୋଗକୁ କର ତୁ ବରଣି,, ବୃତ୍ତରେ ।
ପ୍ରାଣମିତ ( ଅଗୋ ) ଯଶଃ ଅଂଶେ ସରବେ ଚନ୍ଦ୍ର । ପଦ ।
ଜୀବନ ପଛକେ ଯାଉ ସେବେ କୀର୍ତ୍ତି ଯଶଃ ଥାଉ
ଅନ୍ତିମରେ ପ୍ରାଣବାୟୁ ନାହିଁ କାର୍ଯ୍ୟ, ଉଡ଼ିଯାଉ
ଏହି କଥା ଭାବେ ନାହିଁ ଚିତ୍ତରେ । ୧ ।
ବୃତ୍ରର ବୀର ତନୟ ଗଲା ସିନା ଯମାଳୟ
ତା' ପ୍ରାପ୍ୟ ରଣରେ ଜୟ କିଏ କରିଅଛି କହ
ତାର ଯୁବେ ସରେ ହେଲେ ଭାରତରେ । ୨ ।

( ପ୍ରସ୍ଥାନ )

ଯବନିକା ପତନ ।

———

# ଚତୁର୍ଥ ଅଭିନୟ ।

## ପ୍ରଥମଦୃଶ୍ୟ—ସଭାସ୍ଥଳ ।

( ବୃତ୍ର, ମନ୍ତ୍ରୀ, ବିଦୂଷକ ଓ ସଭାସଦ୍‌ବର୍ଗ )

ବୃତ୍ର— କାହିଁ ? ଏତେବେଳଯାଏ ତ ଯୁଦ୍ଧର କିଛି ସମ୍ବାଦ ମିଳିଲା ନାହିଁ ? ମନ ତ କାହିଁକି ବଡ଼ ବ୍ୟାକୁଳ ହେଉଛି ।

ମନ୍ତ୍ରୀ— କିଛି ଚିନ୍ତା କରନ୍ତୁ ନାହିଁ ମହାରାଜ ! ଯୁବରାଜ ଜୟଲାଭ ନ କଲେ କି ଫେରିବେ ? ସେ ନିଶ୍ଚୟ ସୁରମାନଙ୍କ ଦର୍ପ ଚୂର୍ଣ୍ଣ କରି ଶୀଘ୍ର ଫେରିବେ ।

ବିଦୂ— ଯାହା ହୁକୁମ ଦେଇଥିଲେ ସବୁ ମିଳିଲା ।—କେବଳ ବ୍ରାହ୍ମଣୀ ପାଇଁ ପଟ୍ଟବସ୍ତ୍ର ଖଣ୍ଡି ମିଳି ନାହିଁ ।

ବୃତ୍ର— କି ମନ୍ତ୍ରିନ୍ ! ଏହାଙ୍କୁ ପଟ୍ଟବସ୍ତ୍ର ଖଣ୍ଡିଏ ଦେଇ ନା ? ବଡ଼ ଆଶ୍ଚର୍ଯ୍ୟ

ମନ୍ତ୍ରୀ— ହଜୁର ପଟ୍ଟବସ୍ତ୍ର ଆଉ ନ ଥିଲା ।—ଆସିଗଲେ ଦିଆଯିବ ।

ବିଦୂ— ଏ ଗୁଡ଼ାକ କଅଣ କିଛି ବୁଝନ୍ତି ? କେବଳ ନିଜ ନିଜ କଥାରେ ତ ବ୍ୟସ୍ତ ! ଆପଣା ପେଟ ପୂରିଗଲା ତ ଗଲା ।—ଏତେ ବେତନ ନେଇ—ଏତେ ଘେଷା ଘର ଖାଇ ତେବେହେଁ ପେଟ ପୂରୁ ନାହିଁ । ଆଉ ଏ ଗରିବ ବ୍ରାହ୍ମଣକୁ ମହାରାଜା ଯାହା ହୁକୁମ ଦେଇଥିଲେ ତାହା ଦେବାବେଳକୁ ନାହିଁ । ଆପଣା କଥା ହେଉଥା'ନ୍ତା ତ ଦେଖନ୍ତ । ମୁଁ ଯାହା କହେଁ ମୁହେଁ ମୁହେଁ । ଅମ୍ଭେ ରାଜାଶ୍ରିତ ଲୋକ ଆଉ କାହିଁକି କାହାକୁ ଭୟ କରିବୁଁ ?

ମନ୍ତ୍ରୀ— ଆଉ କିଛିନାହିଁ, ସବୁବେଳେ କେବଳ ତୁମ୍ଭର କଥା ଗୁଡ଼ାକ କହ ବସ ।

ବିଦୂ— କି ହୋ ? ଅମ୍ଭେ ଅମ୍ଭ କଥା କହନ୍ତୁ ନାହିଁ ତ, ଆଉ କଅଣ ତୁମ୍ଭ କଥା କହନ୍ତୁ କି ? ଆପଣା ଦୁଃଖ ନ କହିଲେ ମହାରାଜା ଜାଣିବେ କିପରି ? ତୁମ୍ଭେ କାହିଁକି ଚିଡ଼ୁଛ ହେ ?—ତୁମ୍ଭର କିଏ କିଛି ଖାଇ ଯାଉଛି କି ?—ଦେହରୁ ତ, ମନ ଠିକଏ ଯିବ-ନାହିଁ ।

ମନ୍ତ୍ରୀ— ( ଆଖି ଦେଖାଇ ) ଭାରତ ବଡ଼ି ବଡ଼ି କଥା କହୁଛ ?

ବିଦୂ— ଢେର ଆଖି ଦେଖିଛି ।

( ସାରଥିର ପ୍ରବେଶ )

ସାରଥି— (ମୃତପିଣ୍ଡ ନେଇ ଥୋଇ ) ସର୍ବନାଶ ଘଟିଚ ମହାରାଜ !

ବୃଦ୍ଧ— ( ମୂର୍ଚ୍ଛା ଓ ପତନ )

ମନ୍ତ୍ରୀ— ପାଣି ଆଣ—କିଏ ଅଛ ?—ଦ୍ୱାର !

ଦ୍ୱାରୀ— ( ପାଣି ଆଣି ପ୍ରବେଶ )

ମନ୍ତ୍ରୀ— ( ପାଣି ସିଞ୍ଚ ଏବଂ ଚେତନା କରାଇ ) ଧୈର୍ଯ୍ୟ ଧରନ୍ତୁ ମହାରାଜ ! ଯା' ହେବାର ହେଲାଣି । ଆଉ ଫେର ଆସିବ ନାହିଁ ।

ବୃଦ୍ଧ— ମନ୍ତ୍ରିନ୍ ! ଆଉ ଧୈର୍ଯ୍ୟ ଧର ହେଉନାହିଁ । ( କ୍ରନ୍ଦନ ପୂର୍ବକ ) ହା ସୁତ ! ହା ଚନ୍ଦ୍ରପୀଡ଼ ! ଏପରି ବୀରେନ୍ଦ୍ର ହୋଇ ତୁ ଯୁଦ୍ଧରେ ହତ ହେଲୁ ? ହାୟ ! ହାୟ !

ସାରଥେ ! ମୃତ୍ୟୁ ପୂର୍ବରୁ ଚନ୍ଦ୍ରପୀଡ଼ କିଛି କହିଥିଲା କି ? ଏ ପୁଷ୍ପବୃନ୍ଦମାନ ତୁମ୍ଭେ କେଉଁଠାରୁ ପାଇ କପରି ଶତ୍ରୁ ପାଖରୁ ମୃତ ପିଣ୍ଡକୁ ଆଣିଲ ? ଚନ୍ଦ୍ରପୀଡ଼ କେପରି ହତ ହେଲା ?

ସାରଥି— ଆଜ୍ଞା ସେ ସମର—କ୍ଷେତ୍ରରେ ଯେପରି ରଣ କୌଶଳ ଦେଖାଇ ଥିଲେ ତାହା ପ୍ରାୟ କୌଣସିକାଳେ ଦେଖା ଯାଇନାହିଁ କୁବେର, ବରୁଣ, ଯମ, ଅଗ୍ନି, ପବନ, କାର୍ତ୍ତିକେୟ, ଜୟନ୍ତ ଏମାନେ ସମସ୍ତେ ପରାଜୟ ସ୍ୱୀକାରପୂର୍ବକ ରଣଭୂମି ତ୍ୟାଗ କରି ପଳାଇ ଯାଇଥିଲେ । ଇନ୍ଦ୍ର ଅନେକଥର ପରାସ୍ତ ହେଲେ ।— ଶେଷରେ ସମସ୍ତେ ଏକତ୍ରିତ ହୋଇ ଶର କ୍ଷେପଣ କଲେ ।— ତହିଁରେ ଯୁବରାଜଙ୍କ ଶରୀର ବିଶେଷଭାବରେ କ୍ଷତ ବିକ୍ଷତ ହୋଇପଡିଲା । ଶେଷରେ ଇନ୍ଦ୍ର ଗୋଟିଏ ଶର କ୍ଷେପଣ କଲେ ।— ତାହା ପ୍ରଜ୍ଜ୍ୱଳିତ ହୋଇ ଯୁବରାଜଙ୍କ ଶରୀରରେ ପଡିଲାକ୍ଷଣି ସେ ପ୍ରାଣ ତ୍ୟାଗ କଲେ । ଯୁବରାଜଙ୍କ ଅଦ୍ଭୁତ ଯୁଦ୍ଧ କୌଶଳ ଦେଖି ପରମ ଶତ୍ରୁ ଇନ୍ଦ୍ର ବାରମ୍ବାର ଧନ୍ୟବାଦ ପ୍ରଦାନପୂର୍ବକ କହିଲେ " ଚନ୍ଦ୍ରପୀଡ଼ ! ତୋହର କି ପ୍ରାର୍ଥନା ଅଛି, କହ, ମୁଁ ନିଶ୍ଚୟ ତାହା ପୂର୍ଣ୍ଣ କରିବି ।" ଯୁବରାଜ କହିଲେ "ମୋର କିଛି ପ୍ରାର୍ଥନା ନାହିଁ । କେବଳ ମୋହର ମୃତ ପିଣ୍ଡଟିକୁ କପରି ମୋର ପିତାମାତାଙ୍କ ସମୀପକୁ ପଠାଇ ଦେବେ । ଏହି ରଣଭୂମିରେ ମୋର ମୃତପିଣ୍ଡକୁ ଯେପରି କାକ ଶୃଗାଳ ଭକ୍ଷଣ ନ କରନ୍ତୁ ।" ଇନ୍ଦ୍ର " ହେଉ" ବୋଲି କହିଥିଲେ । ମୃତ୍ୟୁପରେ ଏହି ମୃତ

ଦେହକୁ ପୁଷ୍ପମାଳା ଓ କର୍ପୂରାଦିଦ୍ୱାରା ଅଧିବାସିତ କରି ଏବଂ ପୁଷ୍ପ-
କରଣ୍ଡମାନରେ ରଖି ଇନ୍ଦ୍ର ମୋତେ ପ୍ରଦାନ କରିବାରୁ ମୁଁ ନେଇ
ଆସିଲି ।

ବୃତ୍ର— ହାୟ ! ରୁଦ୍ରପୀଡ଼ ! ବାପ ! ତୋହ ପ୍ରାୟ ବୀର ଯୁଦ୍ଧରେ ହତ
ହେବ, ଏହା ତ ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ଭାବିଥିଲେ
ମୁଁ କେବେ କ ପାଇଁ ତୋତେ କି ପଠାଇ ଥାଆନ୍ତି ? ( ମନ୍ତ୍ରୀଙ୍କୁ
ଅନାଇ ) ମନ୍ତ୍ରିନ୍ ! ଆଉ ଧୈର୍ଯ୍ୟ ଧରି ହେଉନାହିଁ । ଅନ୍ୟାୟ
ଯୁଦ୍ଧରେ ବାସବ ମୋର ପୁତ୍ରକୁ ହତ୍ୟା କରିଅଛି ।

ମନ୍ତ୍ରୀ—ଆଜ୍ଞା ଆଉ ଯୁବରାଜଙ୍କ ପାଇଁ ବ୍ୟାକୁଳ ହେବାରୁ ହେବନାହିଁ ।
ବର୍ତ୍ତମାନ ଯାହା କର୍ତ୍ତବ୍ୟ ତାହା ଭାବିବାର ଉଚିତ ।

ବୃତ୍ର—ଆଉ କଅଣ ଭାବିବାକୁ ଅଛି ? କେବଳ ସେହି ଇନ୍ଦ୍ରର ଦର୍ପ
ଚୂର୍ଣ୍ଣ କରିବାକୁ ହେବ ।—ସେହି ପବନ, ସେହି ବରୁଣ, କୁବେର,
ଅଗ୍ନି, ଯମ, ଜୟନ୍ତ ଆଦି ସୁରମାନଙ୍କର ଦର୍ପ ଚୂର୍ଣ୍ଣ କରିବାକୁ
ହେବ । ତେବେ ଯାଇଁ ପୁତ୍ର ଶୋକ କିଞ୍ଚିତ ଦୂର ହେବ ।

ବିଦୂ—( ସ୍ୱଗତଃ ) ଇନ୍ଦ୍ରର ପୁଣି ଦର୍ପ ଚୂର୍ଣ୍ଣ କରିବ ? ରୁଦ୍ରପୀଡ଼ର
ଗଲା—ଏଇଟାର ମଧ୍ୟ ଏହିଥର ଗତାୟୁ ହେବ । ଆଉ ଏ
ଯୁଦ୍ଧକୁ ଗଲେ ସିଏ ଫେରିବ ? ମୋତେତ ଆଉ ଭରସା
ଦେଖାଯାଉନାହିଁ । ( ପ୍ରକାଶ୍ୟେ ) ମହାରାଜ ! ଶୀଘ୍ର ରଙ୍ଗ-
ଭୂମିରେ ଅବତୀର୍ଣ୍ଣ ହେଉନ୍ତୁ ।—ଅବିଳମ୍ବେ ଇନ୍ଦ୍ରାଦି ଦେବଗଣଙ୍କର
ଦର୍ପ ଚୂର୍ଣ୍ଣ କରନ୍ତୁ ।

ବୃତ୍ର—ସହ୍ୟ ହେଉନାହିଁ, ମନ୍ତ୍ରିନ୍ ! ସହ୍ୟ ହେଉ ନାହିଁ [illegible] ଯୁଦ୍ଧକୁ
ବାହାରିଲି । ମୁଁ ସେ ଥର ଯୁଦ୍ଧରେ ଦେବତାମାନଙ୍କୁ ପରାଜୟ କରି
ବିତାଡ଼ିତ କରି ଦେଇଥିଲି ସିନା ଏଥର ସେମାନଙ୍କୁ ଅନନ୍ତଗର୍ଭକୁ
ପ୍ରେରଣ କରିବ । ( ରୋଷଭରେ ) ଦେଖ୍ ଇନ୍ଦ୍ର—ଦେଖନ୍ତୁ ଦେବ-
ତାମାନେ ଆଜ ବୃତ୍ରର ଶେଷ ଯୁଦ୍ଧ ଦେଖନ୍ତୁ ।—ହୁଁ, ଏବେ ସେମାନେ—
ନାହିଁ ତ ମୁଁ—ଆଉ ଏଥର ରକ୍ଷା ନାହିଁ ।—ଇନ୍ଦ୍ର ! ଦେଖିବୁ—
ଦେଖିବୁ—ଦେଖିବୁ ।—ମନ୍ତ୍ରିନ୍ ! ସଭା ଭଙ୍ଗକର ।—ଯାଅ—
ସୈନ୍ୟମାନଙ୍କୁ ଉତ୍ସାହିତ କରି ଶୀଘ୍ର ଆଣ ।—ମୁଁ ଅଗ୍ରସରୁଁ
ଅଛେ ।—

ପଟକ୍ଷେପଣ ।

———

ଦ୍ୱିତୀୟଦୃଶ୍ୟ ।—ଅନ୍ତଃପୁର ।

ରାଣୀ ଐନ୍ଦ୍ରିଲା ଏବଂ ଚଞ୍ଚଳା ସଖୀ ।

ଐ— ଚଞ୍ଚଳା ! ଯୁଦ୍ଧ ସମ୍ବାଦ କଛି ଶୁଣିଛୁ କ ?

ଚ— ନାହିଁ ମଣିମା ! କଛି ଶୁଣି ନାହିଁ ।

ଐ— ରୁଦ୍ରପୀଡ଼ ଆଜ ଇନ୍ଦ୍ର, ପ୍ରଭୃତିଙ୍କୁ ଅଥଯ୍ୟ କରୁଥିବ । ତା ସଙ୍ଗରେ ପୁଣି ଯୁଦ୍ଧ କର ଜୟ ହେବ କ ଏ ? କ ଚଞ୍ଚଳା ?

ଚ— ଅଜ୍ଞା ! ଯୁବରାଜଙ୍କ ସଙ୍ଗରେ ଯୁଦ୍ଧ କର ଜୟ ହେବ କଏ ?

ଐ— ଏଥର ଶଚୀର ଗର୍ବ ନିଶ୍ଚୟ ଭାଙ୍ଗିଯିବ ।—ଚିରକାଳ ଏଠାରେ ଦାସୀ ହୋଇଥିବ ।

ଚ— ଏ କଥା ପୁଣି ପଚାରିବାକୁ ଅଛି ?

( ସ୍କନ୍ଧରେ ଭୃତ୍ୟ ଶବ ଧର ପ୍ରବେଶ । )

ଐ— ଏ କଏ ? ରୁଦ୍ରପୀଡ଼ ? ( ମୂର୍ଚ୍ଛା ଓ ପତନ । )

ଚ— ( ଦଉଡ଼ିଯାଇ ପାଣି ଆଣି ମୁହଁରେ ଦେଇ ) ମଣିମା ! ଧୈର୍ଯ୍ୟ ଧରନ୍ତୁ ।—

ଐ— ( ସଜ୍ଞା ଲାଭପୂର୍ବକ ) ଚଞ୍ଚଳା ! ଆଉ କ ଧୈର୍ଯ୍ୟ ଧରୁ ହେବ ? ମୋ ବାପା ! ରୁଦ୍ରପୀଡ଼ ! ତୋର ଏ ଦଶା କପରି ଘଟିଲା ?

( ବୃତ୍ରର ପ୍ରବେଶ )

ବୃତ୍ର— ( କ୍ରନ୍ଦନ ପୂର୍ବକ ) ପ୍ରିୟେ ! ସର୍ବନାଶ ଘଟିଛି ।

ଐ— ( କାନ୍ଦି ) ରୁଦ୍ରପୀଡ଼ ଯୁଦ୍ଧରେ କପରି ହତ ହେଲା ? ମୋତେ ତ ଅଶ୍ଚର୍ଯ୍ୟ ଲାଗୁଛି ।

ବୃତ୍ର— ପ୍ରିୟେ ! ଇନ୍ଦ୍ର, ପବନ, ବରୁଣ, କୁବେର, ଯମ, ଅଗ୍ନି, କାର୍ତ୍ତିକେ ଏବଂ ଜୟନ୍ତ ଆଦି ବିପକ୍ଷ ପକ୍ଷର ସମସ୍ତ ରଥୀ ମହାରଥୀମାନେ ପରାସ୍ତ ହେବାରୁ ସମସ୍ତେ ଏକକାଳୀନ ଶର ନିକ୍ଷେପ କର ରୁଦ୍ରପୀଡ଼କୁ ହତ୍ୟା କଲେ । ପ୍ରିୟତମେ ! ଆଉ ସହ୍ୟ ହେଉନାହିଁ । ମୁଁ ଏବେ ଯୁଦ୍ଧକୁ ଯାଉଅଛି । ଏଥର ବାସବର ଦର୍ପ ଚୂର୍ଣ୍ଣ କର ଆସିବ ।

ଐ— ମହାରାଜ ! ଆପଣ ଆଉ ସେ କାଳଯୁଦ୍ଧକୁ ଯାଉନ୍ତୁ ନା ।—ଏବେ ପୁତ୍ର ଶୋକରେ ମୁଁ ଅଧୀର, ତହିଁରେ ପୁଣି ଆପଣ ମୋତେ ଛାଡ଼ ଯିବେ । ଆପଣ ବିନା ମୋତେ ସାନ୍ତ୍ୱନା ଦେବ କିଏ ।—କିନ୍ତୁ ମୋତେ ଏକାକିନୀ କର ଛାଡ଼ିଯିବା ଉଚିତ କି ?

ବୃତ୍ର— ପ୍ରିୟେ ! ମୁଁ ମଧ୍ୟ ପୁତ୍ର ଶୋକରେ ଅଧୀର ।—ଇନ୍ଦ୍ର ଯେ ଏହିକ୍ଷଣି ଆସି ଆମ୍ଭମାନଙ୍କୁ ଆକ୍ରମଣ କରିବ । ତାର ଆକ୍ରମଣ ପୂର୍ବରୁ ଆମ୍ଭେ ଆକ୍ରମଣ କରିବା ଭଲ ନୁହେଁ କି ?

ଶ୍ରୀ— ତେବେ ମହାରାଜ ! ଯାଉନ୍ତୁ ।—ସେହି ଇନ୍ଦ୍ରର ଦର୍ପ ଚୂର୍ଣ୍ଣ କରନ୍ତୁ । ଆଗେ ତାହାର ପୁତ୍ର ଜୟନ୍ତକୁ ମାରିବେ । ତେବେ ସେ ଆମ୍ଭପରି ପୁତ୍ର ଶୋକରେ ଅଧୀର ହେବ । ପୁତ୍ର ଶୋକରେ ପିତାମାତାଙ୍କ ମନ କିପରି ହୁଏ ତାହା ସେ ଥରେ ଜାଣୁ ।—

ବୃତ୍ର— ମୁଁ ଯାଉଛି ।—ତୁମ୍ଭେ ଥାଅ—ଅବିଳମ୍ବେ ଫେରିବି । ( ପ୍ରସ୍ଥାନ )

ପଟକ୍ଷେପଣ ।

---

ତୃତୀୟ ଦୃଶ୍ୟ—ରାଜଭବନସ୍ଥ ଏକ କକ୍ଷ ।

( ଇନ୍ଦୁବାଳା ଏକାକିନୀ ଉପବିଷ୍ଟା । )

ଇନ୍ଦୁ— ( ସ୍ୱଗତଃ ) କାହିଁ ? ପ୍ରାଣନାଥତ ଆଜଯାଏ ଫେରିଲେ ନାହିଁ ? ମନତ ଭାରି ବ୍ୟାକୁଳ ହେଉଛି ! ଅବିଳମ୍ବେ ଫେରିବେ ବୋଲି ମୋତେ କହିଯାଇଥିଲେ—ଆଜଯାଏ କଅଣ ରଣାଗ୍ନି ନିର୍ବାପିତ ହୋଇନାହିଁ ? କି ହାନ୍ତି ? ପ୍ରାଣନାଥଙ୍କ ବିନା ତ ହୃଦୟ ବଡ ଫାଟି ହେଉଛି !

( ଗୀତ )

ଭୃଙ୍ଗିଅଙ୍ଗ—ଏକତାଳୀ ।

ପ୍ରାଣମଣି ! ଗଲ ଦାସୀକୁ କରିଣ ଏକାକିନୀ । ପଦ ।
ବିରହ-ଯନ୍ତ୍ରଣା ପ୍ରାଣନାଥ ! ସହି ହେଉ ନାହିଁ ଦିବାରାତ୍ର ।
ଏକାଳେ ତୁମ୍ଭର,—ପ୍ରଣୟ ମଧୁର ପାଇ ହେଉଥାନ୍ତି କି ସୁଖିନୀ । ୧ ।
ସଂସାରେ ସକଳ ମିଳିପାରେ ମିଳେ ନାହିଁ ସ୍ୱାମୀ ପ୍ରୀତି ବାରେ
ସେ ପ୍ରୀତି-ପୀଯୂଷ ଚଖାଇ ମାନସ ତୋଷ କର ମୋତେ ଥରେ ପୁଣି । ୨ ।

( ଶଚୀଙ୍କର ପ୍ରବେଶ । )

ଶଚୀ— ମା ! ଗୀତଟିଏ ଗାଉଥିଲୁ କି ? ଆଜ ମୁଁ ଯେଉଁ କଥା କର୍ଣ୍ଣରେ ଶୁଣିଲି ଏବଂ ନେତ୍ରରେ ଦେଖିଲି ତାହା କିପରି ତୁମ୍ଭଙ୍କୁ କହିବି ?

ଇନ୍ଦୁ— ଦେବି ! କଅଣ କହନ୍ତୁ ।—ମନରେ ବଡ଼ ଉତ୍କଣ୍ଠା ଜାତ ହେଉଛି

ଶଚୀ— ମା ! ତୁମ୍ଭର ସ୍ୱାମୀ ଆଉ ଏ ଇହଲୋକରେ ନାହାନ୍ତି ।—ଯୁବରାଜଙ୍କ ସାରଥି ମୃତ ପିଣ୍ଡ ଧରି ଆସିଛି ।—ଅବିଳମ୍ବେ ଦେଖିବ ଓ ସମସ୍ତ ଶୁଣିବ ।—

ଇନ୍ଦୁ— ( ମୂର୍ଚ୍ଛା )

ଶଚୀ— ( ଉଠାଇ ) ମା ! ଏପରି କାତର ହୁଅ ନା ।—ଯା' ହେବାର ହେଲାଣି ।—ବର୍ତ୍ତମାନ ଧୈର୍ଯ୍ୟ ଧରିବାକୁ ହେବ ।—

ଇନ୍ଦୁ— (କ୍ରନ୍ଦନସ୍ୱରେ) ଦେବ ! ଆଉ କି ଧୈର୍ଯ୍ୟ ଧରି ହେବ ? ଏ ପ୍ରାଣ ପ୍ରାଣନାଥଙ୍କ ସଙ୍ଗେ ସଙ୍ଗେ ଗଲେ ଅଧିକ ଭଲ ।— ବୃଥାରେ ଏ ପ୍ରାଣକୁ ରଖି କଅଣ କରିବି ? ଏ ଯୌବନରେ ଆଉ କି କାର୍ଯ୍ୟ ?

(ଇନ୍ଦ୍ରିଲା ଓ ଚଞ୍ଚଳାର ପ୍ରବେଶ ।)

ଈ— (କ୍ରନ୍ଦନପୂର୍ବକ) ମା ! ତୋହର କରମ ମନ୍ଦ ! —ଆଉ ତୋର ଏରୂପ—ତୋର ଏ ଯୌବନ ଦେଖି ମୋର ହୃଦୟକୁ ସମ୍ଭାଳି ହେଉନାହିଁ ।—ପୁତ୍ର ଶୋକ ଅତି କଠିନ—ତୋତେ ଅନାଇଲାକ୍ଷଣି ସେ ଶୋକ ଦୁଇଗୁଣ ବଢ଼ି ଯାଉଛି ।— ମୁଁ ତ ଧୈର୍ଯ୍ୟ ଧରିପାରୁ ନାହିଁ ।—ତୁ କି ଧୈର୍ଯ୍ୟ ଧରି ରହିବୁ ?

ଇନ୍ଦୁ— (କ୍ରନ୍ଦନପୂର୍ବକ) ମାତଃ ! ମୁଁ ପ୍ରାଣନାଥଙ୍କ ଶବ ଦେଖିବି ।— କାହିଁ ? ଆଣନ୍ତୁ ।—ଚଞ୍ଚଳା ! ଯା—ଶବକୁ ନେଇ ଆସିବୁ । ମୁଁ ଥରେ ପ୍ରାଣନାଥଙ୍କୁ ଦେଖେଁ ।

ଚ— (ପ୍ରସ୍ଥାନ)

ଇନ୍ଦୁ— ମୁଁ ପରା କହୁଥିଲି ଇନ୍ଦ୍ରଙ୍କୁ ଶଚୀ ସମର୍ପଣ ନ କଲେ ଏବଂ ଅମରାବତୀ ପ୍ରଦାନ ନ କଲେ ଦୈତ୍ୟକୁଳ ଛାରଖାର ହେବ । ମୋ କଥାତ କେହି ମାନିଲେ ନାହିଁ । ହା ଭାଗ୍ୟ ! ହା ପ୍ରାଣନାଥ ! ମୋ କପାଳରେ ପୁଣି ଏହା ଥିଲା ?

ଈ— ମା ! କି ଏ କାହାର କପାଳ ଦୋଷ ଦେଖିଛ । ଏହା ଜାଣିଥିଲେ କି ମୁଁ ମୋହର ପ୍ରାଣର ପୁଅକୁ ଛାଡ଼ି ଦେଇଥାନ୍ତି ? ଦୈତ୍ୟକୁଳରେ ଜନ୍ମଲାଭ କଲେ ଏହିପରି ଘଟିଥାଏ ।

(ଦୁଇଜଣ ଭୃତ୍ୟ ଶବ ନେଇ ଚଞ୍ଚଳାସହ ପ୍ରବେଶ)

ଇନ୍ଦୁ— (ଶବଉପରେ ପଡ଼ି) ଏ ଅଭାଗିନୀକୁ ଏକାକିନୀ କରି କାହିଁ ଛାଡ଼ି ଗଲ ? ଆଉ କି ମୋ ମଧୁର କଥା ଶୁଣିବି ? ଶରୀର ଅସୁସ୍ଥ ହେଲେ କିଏ ମୋତେ ସୁସ୍ଥ କରାଇବ ?

ଆଉ ଏ ପ୍ରାଣରେ ମୋହର ପ୍ରୟୋଜନ ନାହିଁ । ଏ ପ୍ରାଣକୁ ଜୀବନେଶ୍ୱରଙ୍କ ଚରଣରେ ସମର୍ପଣ କରିବି ।

ଗୀତ ।

ପୂରବୀ—ଝୁଲା ।

"କା' ଅଗେ କହିବି କିସ ହୃଦର ବେଦନା ସହି" ବୃଥାରେ ।

ବାଞ୍ଚିବ ଆଉ କି ଦାସୀ ନ ଦେଖି ତୁମ୍ଭଙ୍କୁ ନାଥ । ଘୋଷା ।

ଚାଲିଲ ଦେବ ! ସ୍ୱର୍ଗଲୋକେ ମୋତେ ଛାଡ଼ି ମର ଲୋକେ ।
ମନର ମୁଁ ତ ଏ ଶୋକେ ନ ଦେଖି ତୁମ୍ଭଙ୍କୁ ନାଥ । ୧ ।
ଯେବେ ମୁଁ କଲି ପ୍ରାର୍ଥନା ନ ଶୁଣିଲ ରଣମନା ।
ଏବେ ହେଲି ମୁଁ ଉଛନ୍ନା ନ ଦେଖି ତୁମ୍ଭଙ୍କୁ ନାଥ । ୨ ।
ତୁମ୍ଭ ପ୍ରାୟ ସ୍ୱାମୀ ଜଣେ ନାହିଁ ଦେବ ! ତ୍ରିଭୁବନେ ।
ରହିବ ମୁଁ କି ଜୀବନେ ନ ଦେଖି ତୁମ୍ଭଙ୍କ ନାଥ । ୩ ।
ପ୍ରବେଶି ତବ ଚିତାରେ ଯାଉଥିବ ଦୁଃଖ ବାରେ ।
ଏବେ ମରନ୍ତି ଚିତାରେ ନ ଦେଖି ତୁମ୍ଭଙ୍କ ନାଥ । ୪ ।

(କାର୍ତ୍ତିକେୟ, ବୀରଭଦ୍ର ଓ ଜୟନ୍ତଙ୍କର ପ୍ରବେଶ )

ତ— ଏ କ'ଣ ! ପୁରୁଷ ତିନୋଟା କାହିଁକି ଏଣିକି ଆସୁଛନ୍ତି ?

ଶଚୀ—ସେମାନେ ଅନ୍ୟ କେହି ନୁହନ୍ତି !—ଜଣେ ମୋର ପୁତ୍ର !—ଅନ୍ୟ ଜଣେ ପୁତ୍ର ତୁଲ୍ୟ ।

ଐ— [ସ୍ୱଗତେ] ତୁମ୍ଭେମାନେ ପୁରୁଷ ଗୁଡ଼ାକ କାହିଁକି ଦେଖି ପଛି ଆସୁଛ ?

ବୀର—ଏ ଦୁଃଖ ସମୟରେ ମଧ୍ୟ ଅନ୍ତର ଏପରି ଭାବ ଅଛି ?

କାର୍ତ୍ତି – ସେ ସେହିପରି ହେଉଥାଉ !—ଅମ୍ଭମାନଙ୍କ କାର୍ଯ୍ୟର ସାଧନ ହେଲେ ହେଲା ।

ଜୟନ୍ତ— ( ଶଚୀଙ୍କୁ ) ଜନନି ! ଏ ଅଭାଗା ପୁତ୍ର ନୈମିଷାରଣ୍ୟରେ, ତୋତେ ରକ୍ଷା କରି ପାରିଲାନାହିଁ । ଯେଉଁ ଦୁଷ୍ଟ ବୃତ୍ରାସୁର ତୋତେ ନୈମିଷାରଣ୍ୟରୁ ଆଣିଥିଲା । ଏବେ ତାହାର ଦୁର୍ଦ୍ଦଶା ଦେଖିଲୁ ? ସମ୍ମୁଖରେ ତାହାର ଶବ । ଏବେ ଚାଲ ଯିବା ।—

ଶଚୀ— ବାପା ! ଯେତେବେଳେ ଯାହା କପାଳରେ ଥାଏ ତାହା ଘଟେ ମୋ ଭାଗ୍ୟରେ ଯେତେକାଳ ଦୁଃଖ ଥିଲା ନ ଟଳିଲା—ସେଥିପାଇଁ ମୁଁ ଦୁଃଖିତ ନୁହେଁ ।

ବୀର— ଏବେ ଶୀଘ୍ର ଚାଲନ୍ତୁ ।—

ଜୟନ୍ତ— ଜନନି ! ଶୀଘ୍ର ଚାଲ ।—ଏବେ ବୃତ୍ର ନିକେ ରଙ୍ଗଭୂମିକୁ ଯାଉଛି ।—ଏଣୁ ମୋତେ ଶୀଘ୍ର ସେଠାରେ ଉପସ୍ଥିତ ହେବାକୁ ହେବ —

ଶଚୀ— ହେଉ ବାପା ! ଚାଲ ।—ମା ଇନ୍ଦୁ ! ଥା—ମୁଁ ଯାଉଛି ।—

ଇନ୍ଦୁ— ( କ୍ରନ୍ଦନପୂର୍ବକ ) ଦେବି ! ଆପଣଙ୍କୁ ଦେଖି ମୁଁ କିଞ୍ଚିତ ଧୈର୍ଯ୍ୟ ଧରିଥାନ୍ତି । ଏବେ ଆପଣ ମଧ୍ୟ ଯାଉଛନ୍ତି ? ହେଉ—ଯାଉନ୍ତୁ ।

( ଶଚୀଙ୍କ ସେନ ଜୟନ୍ତ, କାର୍ତ୍ତିକେୟ ଓ ବୀରଭଦ୍ରଙ୍କ ପ୍ରସ୍ଥାନ )

ଐ— ଘଂ ହେବାର ହେଲାଣି—ଆଉ କ ମୁଁ ରୁଦ୍ରପୀଡ଼ଙ୍କୁ ପାଇବ ?

ଚ— ଆଉ କାନ୍ଦିବାର ଦରକାର ନାହିଁ । କାନ୍ଦୁଥିଲେ ଏହିପରି କାନ୍ଦ ଥିବେ । ଯେ ଗଲାଣି ସେ ଆଉ କ ଆସିବ ।—ଏବେ ତାହାର ଅନ୍ତ୍ୟେଷ୍ଟିକ୍ରିୟା କର । ବେଶିବେଳ ଯାଏ ରଖିବା ଉଚିତ ନୁହେ ।

ଐ— ହେଉ—ସେନ ଚାଲ ।

ଇନ୍ଦ୍ର— ଚାଲ – ମୁଁ ମଧ୍ୟ ଯିବି । ଏ ଜୀବନକୁ ସେହି ଚିତାରେ ଅର୍ପଣ କରି ସମସ୍ତ ଚିନ୍ତା—ସମସ୍ତ ବିଷାଦ—ସମସ୍ତ ବେଦନା ଦୂର କରିବି ।

( ସମସ୍ତେ ଶବସହ ପ୍ରସ୍ଥାନ )

ତୃତୀୟ ଦୃଶ୍ୟ ।

( ଅଦୃଷ୍ଟ କୁମାରୀମାନଙ୍କ ପ୍ରବେଶ, ନୃତ୍ୟ ଓ ଗୀତ )

ସାହାନା—ଯତି ।

କହୁ ଆଶା ପୋଷି ଥା'ନ୍ତି ଲୋକେ ଯେ ହୃଦୟେ
ମନେ ମନେ ବସି ଥା'ନ୍ତି ଆକାଶ—ନିଳୟେ । ପଦ ।
ରୁଦ୍ରପୀଡ଼ର ମରଣ—ସମ୍ବାଦ କିହ ଶୁଣିଣ
ଗଲା ଉଣେ ପ୍ରଭିହଂସା ବହ୍ନି ହୃଦୟେ । ୧ ।
ବ ଅଛୁ ଲଲାଟେ ତା'ର ଜାଣିଛୁ କ ଭୂଗର୍ଭର
କହିଲେ ମେଦିନୀ କମ୍ପାଇ "ଜୟେ ଜୟେ ଜ ଯେ ।" ।୨।

ଯବନିକା ପତନ ।

—୦※୦—

# ପଞ୍ଚମ ଅଭିନୟ ।

ପ୍ରଥମ ଦୃଶ୍ୟ—ରଣଭୂମି ।

ବୃଷ— ( ଚତୁର୍ଦ୍ଦିଗରେ ଭ୍ରମଣପୂର୍ବକ ମୃତସେନାମାନଙ୍କ ନିରୀକ୍ଷଣ କରି ) ଅହୋ ! କ ଭୀଷଣ ଦୃଶ୍ୟ ! ଯେଉଁ ଦିଗକୁ ଦୃଷ୍ଟିପାତ କରେ କେବଳ ମୃତସୈନିକ ! କାହାର ବକ୍ଷ ଶରାଘାତରେ ବିଦୀର୍ଣ୍ଣ ହୋଇ ଯାଇଛି !—କାହାରି ସର୍ବାଙ୍ଗ ଶରବିଦ୍ଧ ହୋଇଛି !— ଶାଣିତ ଅସିଦ୍ୱାରା କାହାର ମସ୍ତକ ଛିନ୍ନ ହୋଇ ମସ୍ତକ ଏକ-ସ୍ଥାନରେ ଓ ଅନ୍ୟାନ୍ୟ ଅବୟବମାନ ଅନ୍ୟସ୍ଥାନରେ ପଡ଼ି ରହିଛି ! ଗଦାଘାତରେ କାହାର ମସ୍ତକ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଯାଇଛି !—

( ବଜ୍ର ହସ୍ତରେ କାଳଭଦ୍ରର ଶବ ଦେଖି ) ଅହୋ ! ଏହିତ
କାଳଭଦ୍ର ଏହିଠାରେ ପଡ଼ିଛି !—( ପୁନଶ୍ଚ ବଜ୍ର ହସ୍ତରେ
ସୁଜନାସୁରଙ୍କୁ ଦେଖି ) ଅହୋ ! ସୁଜନ ମଧ୍ୟ ଏହିଠାରେ !—
କାଳଭଦ୍ର ! ସୁଜନ ! ମୋହର ଦୁରାଶା ହେତୁ ସିନା ତୁମ୍ଭେମାନେ
ରଙ୍ଗଭୂମିରେ ଶଯ୍ୟାଶାୟୀ ହେଲ ! ଆଉ ମୁଁ କାହାକୁ ଘେନି
ରାଜ୍ୟଶାସନ କରିବି ? ହା ପୁତ୍ର ! ହା ରୁଦ୍ରପୀଡ଼ ! ତୁ ଏହି
ସମରକ୍ଷେତ୍ରରେ ପ୍ରାଣ ତ୍ୟାଗ କଲୁ ? ଆଉ କି ଏ ଜୀବନକୁ
ଭରସା ଅଛି !—ଦେବାଧିଦେବ ମହାଦେବଙ୍କ କୋପାନଳରୁ
କିନା ଏହା ଘଟିଲା !—ନା—ତାଙ୍କର ଦୋଷ ଦେବି ନାହିଁ ।
ମୋର ଦୁରାଶାରୁ ଏ ସବୁ ଘଟିଛି ।

( ରଣ ଚଣ୍ଡୀର ପ୍ରବେଶ, ବିକଟହର୍ଷ, ରୁଧିରପାନ ଓ ନୃତ୍ୟ )

ରଣଚଣ୍ଡୀ— ( ବୃତ୍ରକୁ ) ତୁମ୍ଭ ଦୁରାଶାରୁ କେତେ ରଥୀ ମହାରଥୀ
ଲୋଟିଲେ ଏ ରଣାଙ୍ଗନେ ଅହେ ଦୈତ୍ୟପତି !
କରିଣ ବିଧବା କେତେ ଅନାଥା ନାରୀଙ୍କୁ ।
କୁଟୂହଳେ ଗଲେ ଜୀରେ ତେଜି ଅବନୀକୁ ।
ତବ ପୁତ୍ର ରୁଦ୍ରପୀଡ ମାତ୍ର ଏ ରଣରେ
ହତ ହେଲା ଅକାରଣ ବାସବ—ବାଣରେ ।
କରିଛ ବାସନା ତୁମ୍ଭେ ମାରଣ ବାସବେ
ଇନ୍ଦ୍ରପଦ ଲଭି କୀର୍ତ୍ତି ରଖିବ ଏ ଭବେ ।
ବୃଥା ଏ ବାସନା ତବ, ବୃଥା ଏ ବାସନା ।
ରହ ନାହିଁ ରଙ୍ଗଭୂମେ କରୁଛି ମୁଁ ମନା ।
ପଳାଅ ଗୃହକୁ ଏବେ ପଳାଅ, ପଳାଅ
କିପାଁ ହେବ ହତ ବୃଥା ? ଯାଅ, ଯାଅ, ଯାଅ ।
ପଡ଼ି ଇନ୍ଦ୍ର ପଦତଳେ କ୍ଷମା ଭିକ୍ଷା କର
ଅବଶ୍ୟ ଦେବେ ସେ କ୍ଷମା ଜାଣ ଦୈତ୍ୟେଶ୍ୱର !
ଯାହା ଇଚ୍ଛା ତାହା ଏବେ କର ଦୈତ୍ୟପତି !
ଦେଖାଇବା ପାଇଁ ଅସି—ଥିଲି ତୁମ୍ଭ କତି ।

( ବିକଟ ହର୍ଷ, ରୁଧିର ପାନ ଓ ନୃତ୍ୟ କରି କରି ପ୍ରସ୍ଥାନ )

ବୃତ୍ର— ( ସ୍ୱଗତଃ ) କଅଣ ! ମୁଁ ଯୁଦ୍ଧ ଭୂମିରେ ହତ ହେବି ? ପୁଣି
ଛାର ଇନ୍ଦ୍ର ହସ୍ତେ ? ଏହା କି ସତ୍ୟ ? —ନା,—ରଣଚଣ୍ଡୀ
ମୋତେ ବିଦ୍ରୂପ କରି କହିଗଲେ ? ମୁଁ ତ ଦେବାଧିଦେବ ମହା-

ଦେବଙ୍କଠାରୁ ଅମର—ଅଜେୟବର ପାଇଛ ! ମୋତେ ବି ଏ
ପୁଣି ଯୁଦ୍ଧରେ ପରାସ୍ତ କରିବ ?—ହିଁ, ଯେବେ ତାଙ୍କର ସ—
ଦସ୍ୟୁଟିକକ ମୋ'ଠାରୁ ଦୂରୀଭୂତ ହୁଏ ତେବେ ହୋଇପାରେ ।—
କିନ୍ତୁ ସେ ଯଦ୍ୱା ଦେଇଚନ୍ତି ସେପରି କେବେ କି ? ମୁଁ ପୁଣି
ରଙ୍ଗଭୂମିରୁ ପଳାଇବି ?—ଏହା କେତେବେଳେ ହେବନାହିଁ ।—
ହୁଏତ ଇନ୍ଦ୍ର, ଏହି ଯୁଦ୍ଧରେ ଯାଉ—ନାହିଁତ ମୁଁ ଏହି ଯୁଦ୍ଧରେ
ଗତାୟୁ ହୁଏଁ । ମୁଁ ପୁଣି ପୃଷ୍ଠଭଙ୍ଗ ଦେଇ ପଳାୟନ କରିବି ?
ଏହା କେତେବେଳେ ହେବ ନାହିଁ ।—କାହିଁ ? ଇନ୍ଦ୍ର କାହିଁ ?
ଅନ୍ୟାନ୍ୟ ଦେବଗଣ କାହାନ୍ତି ? ମୋତେ କଅଣ ଭୟ କରି
ରଣକ୍ଷେତ୍ରକୁ ଆସୁ ନାହାନ୍ତି ?—

( ଇନ୍ଦ୍ରାଦି ଦେବଗଣଙ୍କ ପ୍ରବେଶ । )

ଇନ୍ଦ୍ର—ହିଁ, ତୋତେ ଭୟ କରି ଅସୁ ନ ଥିଲି ?—

ବୃତ୍ର— ତେବେ ଏତେବେଳଯାଏ କେଉଁଠାରେ ଥିଲୁ ?
ମୁଁ ଯେ ତୋତେ କେତେବେଳୁଁ ଅପେକ୍ଷା କରିଚି ।

ଯମ— ହେବୁ ତୁ ବଧନ ମମ ହସ୍ତେ ଦୈତ୍ୟପତି !
ଜାଣୁନା କି କାଳଦଣ୍ଡ ଅଛି ମୋହ ହସ୍ତେ ?

ବୃତ୍ର— ବାକ୍ୟେ ଆଉ ପ୍ରୟୋଜନ ନାହିଁ ରେ ଶମନ
କାର୍ଯ୍ୟେ ଦେଖିବାକୁ ମୁଁ ତ ରହିଛି ଅନାଇଁ
ଅକାରଣ ଗର୍ବ ତୋର ହେଉ ନାହିଁ ସହ୍ୟ,
ଧର ଅସ୍ତ୍ର ବେଗେ, ତୋର ଦେଖିବି ଗାରିମା ।

( ଯୁଦ୍ଧ ଓ ଯମର ମୋହ )

ବରୁଣ— ପରାଜୟ ଦେଇ ଯମେ ଆରେ ନୀଚାଧମ !
ଇଚ୍ଛିଛୁ ତୁ ପରାଜୟ ଦେବୁ ମୋତେ ପୁଣି
ଧର ଧନୁର୍ବାଣ ଆଶୁ, ନ କର ବିଳମ୍ବ ।

ବୃତ୍ର— ନୀଚାଧାମ ବୋଲି ଯାହା କହିଲ ବରୁଣ !
ହାସ୍ୟାସ୍ପଦ କଥା ତାହା, ବୋଲନ୍ତି କାହାକୁ
ନୀଚାଧମ ଏ ଜଗତେ ?—ଦେଖିବୁ ବରୁଣ !

( ଯୁଦ୍ଧ ଓ ବରୁଣର ମୋହ )

କୁବେର— ଶମନ ବରୁଣ କେହ୍ନ ଥିଲେ ଜୀର୍ଣ୍ଣ ଶୀର୍ଣ୍ଣ
ହରାଇଛୁ ବୋଲି ତାଙ୍କୁ ମୋତେ ହରାଇବୁ ?
ଏହି ଗଦାବରେ ଚୂର୍ଣ୍ଣ କରିବି ରେ ତୋତେ ।

ବୃତ୍ର— ଦେଖିବ କୁବେର ତୋର ପ୍ରତିଜ୍ଞା ଏ କ୍ଷଣି ।

( ଯୁଦ୍ଧ ଓ କୁବେର ମୋହଗତ )

ପବନ— ଜାଣିଲି ରେ ବୃତ୍ର ! ତୋତେ ଜଣେ କୁ ବୀରେନ୍ଦ୍ର,
ବଳୁ ମୋହ ପାଶେ ଭୁହ କାଟଠାରୁ ଘୀଳ;
ତେମନ୍ତେ ଯୁଝିବ ତୋହ—ସଙ୍ଗେ ଅରେ ଦୈତ୍ୟ !

ବୃତ୍ର— ଅସହ୍ୟ ହେଉଛି ମୋତେ ତୋ କଟୂ କାଠବ୍ୟ,
ଧର ଅସ୍ତ୍ର ଯେବେ ତୁ ଟେ ବୀର ବୀରକୁଳେ ।

( ଯୁଦ୍ଧ ଓ ପବନ ମୋହଗତ )

ଅଗ୍ନି— ମୋ ହାତବାଡ଼େ ପଡ଼ ଅରେ ଯାଇଥିଲୁ ଖସି,
ଏଥର ତୋହର ଅଉ ନାହିଁ ପରିତ୍ରାଣ;
ଭସ୍ମ କରିବ ମୁଁ ତୋତେ ରେ ଦୁରନ୍ତ ରକ୍ଷଃ !
ଏହି ରଣଚଣ୍ଡୀପୀଠେ; ନାହିଁ ରେ ସଂଶୟ ।

ବୃତ୍ର— କାଲି ତ ଶୁଣିମ ପ୍ରତିଜ୍ଞା ଅରେ ବୈଶ୍ୱାନର !
ଦେଖିଲେ କାର୍ଯ୍ୟରେ ତାହା ହେବି ମୁଁ ସନ୍ତୁଷ୍ଟ !

( ଯୁଦ୍ଧ ଓ ଅଗ୍ନି ମୋହଗତ । )

ଜୟନ୍ତ— ତୋହ ସଙ୍ଗେ ଯୁଦ୍ଧ-ତୃଷ୍ଣା ଅଛି କେଉଁ କାଳୁଁ,
ହୃଦେ ମୋର; ଅରେ ଦୈତ୍ୟ ! ଦେଖିବ ମୁଁ ଥରେ
କପଟ ବୀରେନ୍ଦ୍ର ଜଣେ ଅଟୁ ଏ ତ୍ରିଲୋକେ ।

ବୃତ୍ର— ( ହସି ) ତବ ମହାରଥିଗଣ ଦେଖୁଛନ୍ତି ଅନ୍ତରେ,
ହେଲେ ଯେବେ ଶଯ୍ୟା-ଶାୟୀ ନ ପାରୁଛୁ ଜାଣି
କପଟ ବୀରେନ୍ଦ୍ର ମୁହିଁ ଅରେ ରେ ବାଳକ !

ଜୟନ୍ତ— ଦେଖିଲେ କି ହେବ, କହ, ନ ହେଲେ ପରୀକ୍ଷା ?

ବୃତ୍ର— ହେଉ, ଭଲ କଥା ତାହା, କିନ୍ତୁ ତୋହ ପ୍ରାୟ
ବାଳକ ସହିତ ଯୁଦ୍ଧ ନୁହେ ପ୍ରୟୋଜନ
ମମ ପକ୍ଷେ; ପରା ତୋର କରୁ ଯୁଦ୍ଧ ଥରେ ?
ଦେଖିବୁ, ଜାଣିବୁ ମୋର ବୀରତ୍ୱ ବାଳକ !

ଜୟନ୍ତ— ଉତ୍ତାପ ହେଉଛି ମୋର, ଅସ୍ୱୀକୃତ ଦର୍ପା
ଶୁଣି, ଅରେ ଦୈତ୍ୟେଶ୍ୱର ! ଧର ଅସ୍ତ୍ର ବେଗେ ।

( ଯୁଦ୍ଧ ଓ ଜୟନ୍ତ ମୋହଗତ )

କାର୍ତ୍ତି— ଜିଣିଲ ସଭିଙ୍କୁ ଅହେ; ଦୈତ୍ୟକୁଳ ନାଥ !
ହେଉଛି ମୋ ଇଚ୍ଛା ଥରେ ଦେଖିବାକୁ ମୁହିଁ ।

ବୃତ୍ର — ( କରଯୋଡ଼େ ) ଶିବପୁତ୍ର ତୁମ୍ଭେ, ଦେବ ! ଶିବଭକ୍ତ ମୁହିଁ
କପର ଧରିବି ଅସ୍ତ୍ର ତୁମ୍ଭର ସମ୍ମୁଖେ ?—
ପୁଣି ତୁମ୍ଭର ବିରୁଦ୍ଧେ ? ହେଉନାହିଁ ଇଚ୍ଛା;
ଜାଣିଛ ତ ଦେବ ! ତବ ପିତା ଦେଇଛନ୍ତି ,
ଅମର ଅଜେୟ ବର ଏ ପାପୀ ଅଧମେ;
ନକେ ନକେ ଅପମାନ ପାଇବ କପାଇଁ ?

କାର୍ତ୍ତି — ହେଉ ପଛେ, ଦେଖିବି ମୁଁ ଥରେ ତବ ଯୁଦ୍ଧ ।
( ଯୁଦ୍ଧ ଓ କାର୍ତ୍ତିକେୟଙ୍କ ପଳାୟନ । )

ବୃତ୍ର — କି ବାସବ ! ଗଲେ ତବ ମହାରଥୀଗଣ
ଏକା ଅଛ ତୁମ୍ଭେ ସିନା ଏହି ରଣାଙ୍ଗନେ ?
ରୁଦ୍ରପୀଡ଼ ବାଳକଙ୍କୁ ବଧି ରଣାଙ୍ଗନେ
ଅନ୍ୟାୟ ସମରେ ବଢ଼ିଅଛି ଗର୍ବ ତୋର;
ଅନ୍ୟାୟ-ସମର ଏବେ କର ମୋହ ସଙ୍ଗେ
ଦେଖିବି ରେ ମୂଢ଼ ! ତୋର ବୀରେନ୍ଦ୍ରତ୍ୱ ଭବେ

ଇନ୍ଦ୍ର — କପାଇଁ ଗର୍ଜିବ ମୂଢ଼ ! କହୁ ମୋହ, ପାଶେ ?
ଯିବୁ ଆଜ ନିଶ୍ଚୟ ତୁ ତୋ ପୁତ୍ର ନିକଟେ;
ପିତା ପୁତ୍ର ସେହିଠାରେ ରହିବ ଏକତ୍ର ।

ବୃତ୍ର — ଦେଖିବି ଦେଖିବି ମୂଢ଼ ! ବୀରତ୍ୱ ତୋହର,
ଦେଖିଥିଲି ସ୍ୱର୍ଗଲୋକରେ ଅରେ ରେ ବାସବ !
କି ନିର୍ଲଜ୍ଜ ଅଟୁ ଜଣେ ଏ ତ୍ରିଲୋକେ ତୁହି !
କରିଦେଲି ତଡ଼ାଉତ ଅମରାବତୀରୁ,
ତେବେ ତୋତେ ହେଉନାହିଁ ତିଳେମାତ୍ର ଲଜ୍ଜା ?
ଛି, ଛି, ହୋଇଥିଲେ ମୁହିଁ ଏପରି ଲଜ୍ଜାରେ
ଦେଖାନ୍ତି ନାହିଁ ଏ ମୁଖ କେବେଁ ରେ କାହାକୁ ?
ନିର୍ଲଜ୍ଜ ଯେ ତା'ର ମନେ ଲଜ୍ଜା ଅଛି କିସ ।

ଇନ୍ଦ୍ର — ସହ୍ୟ ହେଉନାହିଁ ମୂଢ଼ ! ତୋହ କଟୁବାଣୀ,
ଛେଦିବି ମସ୍ତକ ତୋର ନିଶ୍ଚୟ ରେ ଆଜି ।

ବୃତ୍ର — ରେ ନିର୍ଲଜ୍ଜ ! ତୋହ ପ୍ରାଣ ଯିବା କି ପଳାଇ
ରଣାଙ୍ଗନୁ ଭାବିଅଛୁ, ତୋହର ଧମକେ ?
ଧର ଅସ୍ତ୍ର ଥରେ ଭଲ ଦେଖିବି ତୋ ପଣ ।

( ବୃତ୍ର ଓ ଇନ୍ଦ୍ରଙ୍କର ପରାଜୟ )

ବୃତ୍ର — ବରେ ମୂଢ଼ ! କାହିଁ ତୋର ସେହି ବୃଥା ଗର୍ବ ?
ଜାଣିଲି ତୁ ନୋହୁ କେବେଁ ସୁରପତି ଇନ୍ଦ୍ର,
" ନିର୍ଲଜ୍ଜ " ପଦବୀ ତୋର ହେଲା ଆଜିଠାରୁ ।

ଇନ୍ଦ୍ର — କରନା ଗର୍ବ ତୋ ଗର୍ବ ଅରେ ରକ୍ଷଃ ବୃତ୍ର !
ଜୟ ପରାଜୟ ଯୁଦ୍ଧେ ଘଟିଥାଏ ସଦା,
ହେଲି ପରାଜିତ ଥରେ; ସେଥିପାଇଁ ମୂଢ଼ !
ମୋତେ କହୁଛୁ 'ନିର୍ଲଜ୍ଜ' ? ଦେଖିବୁ ଏକ୍ଷଣି
ରହିବ ନାହିଁ ତୋ ଗର୍ବ ଅରେ ରେ ଦୁରନ୍ତ !
[କରଯୋଡ଼େ ସ୍ୱଗତଃ] ଶିବ ! ଶମ୍ଭୋ ! ହେଲାନାହିଁ ଏ ବୃତ୍ର ନିଧନ;
ସମସ୍ତେ ଭଜିଲେ ନିଦ୍ରା ପୁଣି ତା'ର ହସ୍ତେ,
ଏକାକୀ ଅଛି ଏ ଦୁଃଖୀ ସଂଗ୍ରାମ ଭୂମିରେ;
କି କରିବି ଦିଶେ ନାହିଁ ବୁଦ୍ଧି ମୋତେ ଛଳେ ।

[ ଅମୃତ ପାତ୍ର ହସ୍ତେ ବୀରଭଦ୍ର ଓ କାର୍ତ୍ତିକେୟଙ୍କ ପ୍ରବେଶ । ]

ବୀର — [ ପାତ୍ର ଦେଇ ] ପଠାଇଲେ ଭୂତନାଥ ମୋତେ ସୁରପତି !
ଏ ଅମୃତ ଦେଇ କରି ସଭିଙ୍କୁ ସଚେତ;
ଯୁଦ୍ଧେ ଆଉ ପ୍ରୟୋଜନ ନାହିଁ ଶଚୀକାନ୍ତ !
ନିକ୍ଷେପି ସେ ସ୍ୱାମବଜ୍ରେ ନିର୍ଦ୍ଦୟ ମାନସେ
କର ଆଶୁ ରକ୍ଷଃପତି ବୃତ୍ରକୁ ସଂହାର;
ଯେ ଆଦେଶ ଥିଲା ମୋତେ କହିଲି ସଂକ୍ଷେପେ ।

ଇନ୍ଦ୍ର — ( ସମସ୍ତଙ୍କ ଉପରେ ସିଞ୍ଚି )
ଉଠ ଉଠ ସୁରଗଣ ! ମୂଢ଼ମତି ବୃତ୍ର
ହତ ହେବ ଏହିଥର ନିଶ୍ଚେ ନିଃସଂଶୟେ ।
[ ସମସ୍ତଙ୍କର ଉତ୍ଥାନ ]

ଇନ୍ଦ୍ର — ହେଉଛି ତ ଭୟ ମୋତେ ପ୍ରଭୁ ଉମାକାନ୍ତ !
କିପରି ମୁଁ ନିକ୍ଷେପିବି ଏ ଭୀଷଣ ବଜ୍ର ?
ତବ ନାମ ସ୍ମରି ପ୍ରଭୋ ! କରୁଛି ନିକ୍ଷେପ ।
( ବୃତ୍ରକୁ ) ମୂଢ଼ ବୃତ୍ର ! ତୋର ଆଉ ନାହିଁ ପରିତ୍ରାଣ,
ଥରେ ତୋର ଇଷ୍ଟଦେବେ କର ରେ ସ୍ମରଣ ।

{ ବଜ୍ର ନିକ୍ଷେପ ଓ ଗମ୍ଭୀର ଗର୍ଜ୍ଜନରେ ବୃତ୍ର ଉପରେ ପତନ
ଓ ବୃତ୍ରର ମୃତ୍ୟୁ । }

ଦେଖ ଦେଖ ସୁରଗଣ ! ହତ ହେଲା ଏବେ
ସେ ଦୁର୍ଦ୍ଦାନ୍ତ ରାକ୍ଷସପତି, ଅଛି କି ଜୀବିତ ?

କାର୍ତ୍ତି— ( ବୃତ୍ରଙ୍କୁ ଦେଖି ) ଲଭିଛି ମଧୁରୁ ବୃତ୍ର'—ଏ ଭୀଷଣ ରଣେ
ଛିଣ୍ଣମୁଣ୍ଡ ଏ ଯେଣମାନ ରାକ୍ଷସକୁଳାଧମ ।

ବରୁଣ— କି ଭୀମ ଗର୍ଜନ ହେବ ! ଅଟଇ ରାକ୍ଷସ ?

କୁବେର—ରକ୍ଷା ହେଲା ସ୍ୱରପୁରୀ, ଏବେ ଦେବଗଣ !
ନିଭିଲ ଉଦ୍ଧାର ଦୁଷ୍ଟ ବୃତ୍ରର କବଳୁଁ;
ଚାଲ ଚାଲ ସର୍ବେ ଏବେ ଯିବା ସ୍ୱର୍ଗ-ଧାମେ ।

ଅଗ୍ନି— ଚାଲ ଯିବା ସର୍ବେ ଏବେ, କରିବା ଉତ୍ସବ,
ହେଲା ଯେବେ ରାକ୍ଷସପତି ବୃତ୍ରର ସଂହାର ।

( ମହାଦେବ ଓ ନନ୍ଦୀଙ୍କ ପ୍ରବେଶ । )

ମହା— ଯାଅ ଶଚୀନାଥ ! ଏବେ, ଅମରାବତୀରେ
ହୁଅ ଅଭିଷିକ୍ତ କର ବିବିଧ ଉତ୍ସବ ।

ଇନ୍ଦ୍ର— ତବ ଦାସ ଅଟେ ଭବ ଏ ଅଧମ ଦେବ !
ଯାହା ଥିଲା ଭାଗ୍ୟେ ମୋର ଘଟିଗଲା ତାହା,
ସେଥିପାଇଁ ଏ ଅଧମ ହୋଇଛି କାତର;
ବୃତ୍ରର ସଂହାର କର୍ତ୍ତା ତୁମ୍ଭେ ଦେବ ! ହିଂସା ?
କିଏ କରଥା'ନ୍ତା ତାଙ୍କୁ ସଂହାର ଏ ଭବେ ?

ମହା— ଯାଅ ଯାଅ ଶଚୀକାନ୍ତ ! ହୁଅ ଅଭିଷିକ୍ତ
ସ୍ୱର୍ଲୋକର ସିଂହାସନେ; ତୁମ୍ଭ ବିନା କି ଏ
ପାଇବ ଇନ୍ଦ୍ରତ୍ୱ ଭବେ—କିଏ ଅଛି ଜଣେ ?

( ମହାଦେବ ଓ ନନ୍ଦୀଙ୍କ ଅନ୍ତର୍ଦ୍ଧାନ । )

ଜୟନ୍ତ— ଚାଲ, ଆଜ ସୁରଗଣ ! କର ଜୟ ଧ୍ୱନି ।

ସୁରଗଣ—ଚାଲ । ( ସମସ୍ତଙ୍କ ପ୍ରସ୍ଥାନ । )

ପଟକ୍ଷେପଣ ।

---

ଦ୍ୱିତୀୟ ଦୃଶ୍ୟ । ଅମରାବତୀ ।

( ଇନ୍ଦ୍ର ଓ ଶଚୀ ସିଂହାସନରେ ଏବଂ ସିଂହାସନର
ସମ୍ମୁଖଦେଶରେ ଦେବଗଣ ଆସୀନ )

( ଅପ୍ସରାମାନଙ୍କ ଗୀତ ଓ ନୃତ୍ୟ । )

ଝିଂଝିଟ—ଏକତାଳୀ ।

ନାଶିଛୁ ଉତ୍ସବ ଅଜ ସୁରପୁରେ ଆନନ୍ଦରେ
ତୋଷମନେ ଦେବଗଣ ରଢ ଏବେ ଉତ୍ସବରେ । ପଦ ।
ଏ ସ୍ୱର୍ଲୋକ ଛାରଖାର କରିଥିଲା ରକ୍ଷଃ ଘୋର !
ହେଲେ ନିରମାଣ ପୁନଃ ବିଶ୍ୱକର୍ମୀ ମିଳିବରେ । ୧ ।
ଏତେ ବସ୍ତ୍ର ହରଜନା ଯେ ଯାହାକୁ ଯୋଗ୍ୟ ସିଜା ।
ସ୍ୱର୍ଣ୍ଣ ୱ ପାଇବ ଶୋଭା ବାଜର କଣ୍ଠ ଦେଶରେ । ୨ ।
ଏବେ ଦେଖ ସୁରପୁରୀ ସୌନ୍ଦର୍ଯ୍ୟ ରହନ୍ତୁ ପୂର ।
କି କଦର୍ଯ୍ୟ ହୋଇଥିଲା କେତେକାଳ ରକ୍ଷଃ କରେ ; ୩ ।
ଆନନ୍ଦରେ ଗାଅ ଗାଅ " ଜୟ ଶିବ ଜୟ ଜୟ "।
ପୂର୍ଣ୍ଣ ହେଉ ସୁରପୁରୀ ହେ ସୁରେ ! ଜୟ ରବରେ । ୪ ।

ଯବନିକା ପତନ ।

—:*:—

ସମ୍ପୂର୍ଣ୍ଣ ।

ଅଶୁଦ୍ଧ ସଂଶୋଧନ ।

| ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ପଂକ୍ତି |
|---|---|---|---|
| ଓବେ | ଓବୋ | ୭ | ୨୫ |
| କଷ୍ଟର | କଷ୍ଟ୍ର | ୧୦ | ୧୮ |
| ଲସମାପ୍ତ | ଅଲସମାପ୍ତ | ୧୦ | ୨୫ |
| ଉନ୍ନତ | ଉନ୍ନତ୍ତ | ୧୧ | ୨୫ |
| କରୁଛ | କରୂଛ | ୧୧ | ୨୮ |
| ଅମ୍ଭମାନଙ୍କ | ଅମ୍ଭମାନଙ୍କୁ | ୧୨ | ୧୩ |
| ଏବେ; | ଏବେ | ୧୪ | ୮ |
| ଦୃଶେ୍ୟ | ଦୃଶ୍ୟ | ୧୫ | ୨ |
| ଅଛ | ଅଦ | ୧୭ | ୯ |
| ଦେବ । | ଦେବ ! | ୧୭ | ୧୨ |
| ଏକକେ | ଏକକେ୍ | ୧୮ | ୧୦ |
| ଉଦ୍ଦେଶ୍ୟ | ଉଦ୍ଦେଶ୍ୟ | ୧୮ | ୧୫ |
| କେଲୋକେ | ଏକେଲୋକେ | ୧୯ | ୪ |
| ମକ୍ତ | ମୁକ୍ତ | ୨୧ | ୧୩ |
| ମକ୍ତ | ମୁକ୍ତ | ୨୧ | ୧୪ |
| ମକ୍ତ | ମୁକ୍ତ | ୨୧ | ୧୫ |
| ଅଜନରେ | ଏଠାରୁ | ୨୧ | ୨୪ |
| ପ୍ରଥମ ଅଧ୍ୟାୟ | ଦ୍ୱିତୀୟ ଅଧ୍ୟାୟ | ୨୧ ପୃଷ୍ଠା | |
| ଅମରାବତୀରେ | ଅମରାବତୀରେ | ୨୨ | ୨୭ |
| ଲୁମ୍ଭକ | ଲୁମ୍ଭକ୍ | ୨୫ | ୪ |
| ଏହୁ | ଏଛନ | ୩୧ | ୨ |
| ଅଧି | ଅଧି | ୩୨ | ୫ |
| ଜୀବନସମ୍ବନ୍ଧ | ଜୀବନସମ୍ବନ୍ଧୀ | ୩୪ | ୧୯ |
| ମ | ମୁଁ | ୩୫ | ୩ |
| ଦମା । | କମା । | ୩୫ | ୨୫ |

| ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ପଂକ୍ତି |
|---|---|---|---|
| କରାଇବ | କରାଇବା | ୩୭ | ୧୧ |
| ମେ | ମୋର | ୩୮ | ୮ |
| ଅମ୍ବ | ଅମ୍ବ | ୩୯ | ୭ |
| ରୋକେ | ରୋକେକ | ୩୯ | ୯ |
| ବଜ୍ରେ | ବଜ୍ର | ୪୧ | ୩ |
| ବ୍ରହ୍ମର | ବଜ୍ରର | ୪୧ | ୧୨ |
| ଭବେ | ଭବେ | ୪୨ | ୧୦ |
| ଯୁଦ୍ଧ | ଯୁଦ୍ଧେ | ୪୬ | ୬ |
| ଅଷ୍ଟ୍ରି | ଅଷ୍ଟ୍ରି | ୪୭ | ୩ |
| ର୍ବକ | ପୂର୍ବକ | ୫୨ | ୧୬ |
| ଇନ୍ଦ | ଇନ୍ଦ୍ର | ୫୨ | ୧୦ |
| କାର୍ତ୍ତିକେ | କାର୍ତ୍ତିକେୟ | ୫୨ | ୧୦ |
| ଯାତ୍ରା | ଯନ୍ତ୍ରା | ୫୨ | ୨୭ |
| ଉଲ୍ଲଙ୍ଘ | ଉଲ୍ଲଙ୍ଘା | ୫୩ | ୨୪ |

ଏତଦ୍ବ୍ୟତୀତ ଋଦ୍ପୀଡ଼କୁ ଋଦ୍ପୀଡ ପଢ଼ିବାକୁ ହେବ ।